# ଗୃହଶିଳ୍ପ

## ପ୍ରଥମ ଖଣ୍ଡ



ରାୟ ବାହାଦୁର ଭିକାରୀଚରଣ ପଟ୍ଟନାୟକ

# ଗୃହଶିଳ୍ପ

## ପ୍ରଥମ ଖଣ୍ଡ

ରାୟବାହାଦୁର ଭକାଶୀଚରଣ ପଟ୍ଟନାୟକଙ୍କ

ପ୍ରଣୀତ




ପ୍ରଥମ ସଂସ୍କରଣ

ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଅର୍ଥାନୁକୂଲ୍ୟରେ

ଉତ୍କଳ ସାହିତ୍ୟ ସମାଜଦ୍ୱାରା

ପ୍ରକାଶିତ ।

୧୯୪୦

# ପ୍ରଥମ ଖଣ୍ଡ

## ସୂଚୀ

# ଗୃହଶିଳ୍ପ

## ପ୍ରଥମ ଖଣ୍ଡ

### ବୟନଶିଳ୍ପ

ଯେତେ ଦେଶରେ ଯେତେ ପ୍ରକାର ଶିଳ୍ପ ଅଛି, ତହିଁ ମଧ୍ୟରେ ବୟନଶିଳ୍ପ ବା ଲୁଗାବୁଣା ପ୍ରଧାନ । ବିଲାତ ଆଦି ଦେଶରେ ଲୁଗାବୁଣା କାମ ଅଧିକ ପରିମାଣରେ କଳଦ୍ୱାରା ହୁଏ । ଭାରତବର୍ଷରେ ମଧ୍ୟ ଅନେକ ସ୍ଥାନରେ ଲୁଗା ବୁଣିବାର କଳକାରଖାନାମାନ ବସିଲାଣି । ୧୯୩୭ ମସିହାର ଡିସେମ୍ବର ୩୧ ତାରିଖ ମଧ୍ୟରେ ଭାରତବର୍ଷରେ ଯେତେ ସୂତା ଓ ଲୁଗାର କଳକାରଖାନା ସ୍ଥାପିତ ହୋଇଥିଲା, ତହିଁର ସଂଖ୍ୟା ଥିଲା ୩୭୦ । ପ୍ରତି ବର୍ଷ ଏହାର ସଂଖ୍ୟା ଅନ୍ୟ ପ୍ରଦେଶମାନଙ୍କରେ ବୃଦ୍ଧି ପାଉଅଛି, କିନ୍ତୁ ଓଡ଼ିଶାରେ ଏପର୍ଯ୍ୟନ୍ତ ଲୁଗା ବୁଣିବାର ବା ସୂତା କାଟିବାର କଳକାରଖାନା କୌଣସିଠାରେ ସ୍ଥାପିତ ହୋଇ ନାହିଁ କିମ୍ବା ନିକଟ ଭବିଷ୍ୟତରେ ସେପରି କୌଣସି କାରଖାନା ଖୋଲା ହେବାର ଆଶା ଦେଖାଯାଉ ନାହିଁ ।

ଭାରତବର୍ଷରେ ଲୁଗାକଳର କାରଖାନା ଯେତେ ବୃଦ୍ଧି ହେଲେ ସୁଦ୍ଧା ଏପର୍ଯ୍ୟନ୍ତ ତନ୍ତବୁଣା ଲୁଗାର ବ୍ୟବହାର ଯଥେଷ୍ଟ ରହିଅଛି । ଓଡ଼ିଶା ପ୍ରଦେଶରେ ତନ୍ତୀଙ୍କ ସଂଖ୍ୟା ୧ ଲକ୍ଷ ୭ ହଜାର ୧୧୫ ଏବଂ ତନ୍ତର ସଂଖ୍ୟା ୪୭ ହଜାର ୪୧୮ । ଯଥା :—

| | | ତନ୍ତୀଙ୍କ ସଂଖ୍ୟା | ତନ୍ତର ସଂଖ୍ୟା |
|---|---|---|---|
| କଟକ | ଜିଲ୍ଲାରେ (ଅନୁଗୋଳ ବର୍ଜିତ) | ୨୪,୫୯୨ | ୧୨,୭୩୫ |
| ବାଲେଶ୍ୱର | ,, | ୯,୩୬୪ | ୫,୦୮୫ |
| ପୁରୀ | ,, | ୧୧,୫୫୪ | ୩,୫୧୫ |
| ସମ୍ବଲପୁର | ,, | ୨୧,୪୩୮ | ୧୧,୬୦୦ |
| ଗଞ୍ଜାମ | ,, | ୨୫,୨୭୯ | ୯,୨୬୩ |
| କୋରାପୁଟ | ,, | ୮,୦୪୪ | ୩,୪୦୧ |
| ଅନୁଗୋଳ | ,, | ୫,୮୪୪ | ୧,୮୧୯ |
| | | ୧,୦୭,୧୧୫ | ୪୭,୪୧୮ |

ଏ ହିସାବରେ ଗଡ଼ଜାତମାନଙ୍କରେ ଥିବା ତନ୍ତ ଓ ତନ୍ତୀଙ୍କ ସଂଖ୍ୟା ଦିଆ ହୋଇ ନାହିଁ । ଓଡ଼ିଶାରେ ବର୍ଷକ ମଧ୍ୟରେ ପ୍ରାୟ ୩ କୋଟି ଟଙ୍କାର ଲୁଗା ଖରଚ ହୁଏ । ତହିଁ ମଧ୍ୟରୁ ପ୍ରାୟ ୧ କୋଟି ସାଢ଼େ ୮୪ ଲକ୍ଷ ଟଙ୍କାର କଳଲୁଗା ଓ ତନ୍ତବୁଣା ଲୁଗା ବିଦେଶରୁ ଆମଦାନି ହୁଏ । ଓଡ଼ିଶାର ତନ୍ତୀମାନେ ୧ କୋଟି ୪୨ ଲକ୍ଷ ୧୯ ହଜାର ୩୦୦ ପାଉଣ୍ଡ (ପାଉଣ୍ଡକ ବାଲେଶ୍ୱରୀ ଅଧସେର) କଳର ସୂତାରେ ଲୁଗା ବୁଣନ୍ତି । ସେହି ଲୁଗାର ମୂଲ୍ୟ ହାରାହାରି ହିସାବରେ ୧ କୋଟି ସାଢ଼େ ୧୫ ଲକ୍ଷ ହେବ । ଲୁଗାର ଦାମରୁ ସୂତାର ଦାମ ବାଦ୍ ଯାଇ ଯାହା ବଳେ, ତାହା ତନ୍ତୀ-ମାନଙ୍କର ମଜୁରି ଓ ସେତିକ ମାତ୍ର ହେଲା ତନ୍ତୀମାନଙ୍କର ଆୟ । ଦିନକୁ ଜଣପିଛା ଦୁଇଅଣାରୁ ଅଧିକ ପଡ଼ୁନାହିଁ । ବିଦେଶରୁ ଆମଦାନି ହେଉଥିବା ଲୁଗା ମଧ୍ୟରୁ ପ୍ରାୟ ୪୦ ଲକ୍ଷ ଟଙ୍କାର ଲୁଗା ଅନ୍ୟ ପ୍ରଦେଶମାନଙ୍କରୁ ତନ୍ତବୁଣା ଲୁଗା ଆସେ । ଓଡ଼ିଶାର ତନ୍ତୀମାନଙ୍କ ଅବସ୍ଥା ଅତି ଶୋଚନୀୟ । ସେମାନେ ଖାଇବାକୁ ନ ପାଇବାରୁ ଅଧିକାଂଶ ତନ୍ତୀ ନାଗର ହୋଇ କଲିକତା ଆଦି ଦୂର ଦେଶକୁ ଯାଇ ସେଠାରେ କୁଲିକାମ କରି ପେଟ ପୋଷୁଅଛନ୍ତି । କେବଳ ଆମ ଦେଶରେ ଏହି ବୟନଶିଳ୍ପ ପ୍ରତି ସହାନୁଭୂତି ନ ଥିବାରୁ ଓଡ଼ିଶାର ଗୋଟିଏ ପ୍ରଧାନ ଶିଳ୍ପର ଏହି ଦୁରବସ୍ଥା ଘଟିଅଛି ।

୨୦ ହଜାର ମାକୁ (Spindles) ର ଗୋଟିଏ ସୂତାକଳ ବର୍ଷରେ ୨୦ ଲକ୍ଷ ପାଉଣ୍ଡ ସୂତା ପ୍ରସ୍ତୁତ କରି ପାରେ । ଓଡ଼ିଶାରେ ବର୍ତ୍ତମାନ ପ୍ରାୟ ୧୪୦ ଲକ୍ଷ ପାଉଣ୍ଡ ସୂତା ଖରଚ ହୁଏ । ଏତିକ ସୂତା ଯୋଗାଇବାକୁ ସେହିପରି ୭ ଗୋଟି ସୂତାକଳ ଆବଶ୍ୟକ ।

ରେଲ ଓ ମଟର ହେବା ପରେ ଯେପରି ଲୋକେ ଆଉ କୌଣସି ଯାନକୁ ପସନ୍ଦ କରୁ ନାହାନ୍ତି ଏବଂ ଶୀଘ୍ର ଯିବା ଆସିବାର ସୁଯୋଗ ପାଇ ଚାଲିବାକୁ ରାଜି ହେଉ ନାହାନ୍ତି, ସେହିପରି କଳସୂତାର ସୁବିଧା ପାଇ ତାହା ଛାଡ଼ିଦେବା ସମ୍ଭବ ନୁହେଁ । ଯେଉଁମାନେ ଘରେ ଆପେ ଆପେ ସୂତା କାଟି ଲୁଗା ବୁଣାଇବେ ସେମାନେ କପାଚାଷ କରି ଘରେ ସୂତା କାଟି ଲୁଗା ବୁଣାଇ ପିନ୍ଧନ୍ତୁ । କିନ୍ତୁ ସୂତାକଳ ହେଲେ କପାଚାଷ କଷ୍ଟସ୍ୟ ବଢ଼ିବ ଏବଂ ସୂତା ପାଇଁ ଯେତେ ଟଙ୍କା ପଦାକୁ ଚାଲି ଯାଉଅଛି ତାହା ସମସ୍ତ ଓଡ଼ିଶାରେ ରହିଯିବ ।

ଓଡ଼ିଶାର ବୟନଶିଳ୍ପ ସମ୍ବନ୍ଧରେ ଇତିହାସ ମିଥ୍ୟା ହେବାକୁ ବସିଲାଣି । ୧୮୩୭ ମସିହାର ଆସିଆଟିକ୍ ସୋସାଇଟିର ମୁଖପତ୍ରରୁ ଜଣାପଡ଼େ ଯେ, ସେ ସମୟରେ ଉତ୍କଳ ବସ୍ତ୍ରବ୍ୟବସାୟ ପାଇଁ ପ୍ରସିଦ୍ଧ ଥିଲା । ହଣ୍ଟର୍ ସାହେବ ତାଙ୍କ ଇତିହାସରେ ଲେଖିଅଛନ୍ତି ଯେ, ସେ ସମୟରେ ଉତ୍କଳରେ ଯେଉଁ ସବୁ ବସ୍ତ୍ର ପ୍ରସ୍ତୁତ ହେଉଥିଲା, ତାହାକୁ ଓଡ଼ିଶାର ରାଜା ଦାମିକା ବଢ଼ିଆ ଭେଟି ଓ ଦେଖାଉରୂପେ ଭାରତର ଅନ୍ୟାନ୍ୟ ରାଜଦରବାରମାନଙ୍କୁ ପଠାଉଥିଲେ । କଥିତ ଅଛି, ଉତ୍କଳର ରାଜା ଅଯୋଧ୍ୟାର ରାଜାଙ୍କୁ ଏପରି ଖଣ୍ଡିଏ ବଢ଼ିଆ ଲୁଗା ପଠାଇଥିଲେ ଯେ, ସେ ସମୟରେ ତାହାଠାରୁ ବେଶୀ କାରିଗରିରେ

ଲୁଗା ପୃଥିବୀରେ ଆଉ କେଉଁଠାରେ ବୁଣା ହେଉ ନ ଥିଲା । ଚାଣକ୍ୟ ତାହାଙ୍କର ଅର୍ଥଶାସ୍ତ୍ରରେ ପ୍ରାଚୀନ ଓଡ଼ିଶାର ସେହି କାଳର ଲୁଗାବୁଣାର ଖୁବ୍ ସୁଖ୍ୟାତି ବର୍ଣ୍ଣନା କରିଯାଇ ଅଛନ୍ତି । କାଗଜ ପତ୍ରରୁ ପ୍ରମାଣ ମିଳେ ଯେ, ଇଷ୍ଟ ଇଣ୍ଡିଆ କମ୍ପାନୀ ଓଡ଼ିଶାକୁ ଆସି ଏଠାରେ ବେପାର ବଣିଜ କଲାବେଳେ ଓଡ଼ିଶାରେ ଲୁଗାବୁଣା ବ୍ୟବସାୟର ଏତେ ଉନ୍ନତି ହୋଇଥିଲା ଯେ, ଇଷ୍ଟ ଇଣ୍ଡିଆ କମ୍ପାନୀ ବର୍ଷରେ ଓଡ଼ିଶାରୁ କେବଳ ଲୁଗା କିଣି ସେ ଲୁଗାରୁ ବର୍ଷକ ୨୦।୧୨ ଲକ୍ଷ ଟଙ୍କା ଲାଭ ପାଉଥିଲେ । ସାର୍ ଯଦୁନାଥ ସରକାର ତାଙ୍କର ମୋଗଲ ଶାସନ (Mogal administration) ନାମକ ପୁସ୍ତକରେ ଲେଖିଅଛନ୍ତି ଯେ, ଏହି ସମୟରେ ଓଡ଼ିଶାରେ ତନ୍ତୀଙ୍କଦ୍ୱାରା ବୁଣା ଲୁଗା ପାଟଣା, ଆଗ୍ରା, ଜାପାନ ଓ ଇଉରୋପକୁ ମଧ୍ୟ ପଠାଯାଉଥିଲା ।

ଓଡ଼ିଆ ତନ୍ତୀଙ୍କର ଲୁଗାବୁଣାରେ ବାହାଦୁରି ଏବେ ମଧ୍ୟ ଲୋପ ହୋଇ ନାହିଁ । ଆଜି ମଧ୍ୟ କେନ୍ଦ୍ରାପଡ଼ାର ଗୁଲନଗର ଗ୍ରାମର ତନ୍ତୀମାନେ ଲୁଗାର ଧଡ଼ିରେ ଓ ମୁହଁଣ୍ଡାରେ ଖୁବ୍ ବାରିକ୍ କାରିକାମ କରି ନାଅନ୍ତା ପଶୁପକ୍ଷୀ, ଲତା ଓ ଫୁଲର ରୂପ ଫୁଟାଇ ଦେଇ ପାରୁଅଛନ୍ତି । ଧଳାପଥର ଏବଂ ନୟାଗଡ଼ର ତନ୍ତୀଙ୍କ କାରିଗରି କମବୁଣା ଆଜି ପର୍ଯ୍ୟନ୍ତ ଅନ୍ୟ ଅଞ୍ଚଳର କାରିଗର ନକଲ କରି ପାରି ନାହାନ୍ତି । ବଡ଼ମ୍ବାର ମାଣିଆବନ୍ଧର ଓ ଛଗିରିଆର ତନ୍ତୀଙ୍କ କାରିଗରି ସହଜରେ ଲୋପ ହେବ ନାହିଁ । ସେମାନେ 'ବାନ୍ଧ' ପ୍ରଣାଳୀରେ ଯେଉଁ ଚିତ୍ରିତ ଲୁଗାମାନ ବୁଣନ୍ତି ତାହା ଓଡ଼ିଶା ଛଡ଼ା ଅନ୍ୟ କୌଣସିଠାରେ ନାହିଁ । ସମ୍ବଲପୁରର ପରଦାର ଆଜି ମଧ୍ୟ ବିଲାତ ଆଦି ଦେଶରେ ଆଦର ହେଉଅଛି ।

ଲୁଗା ବୁଣିବା ପାଇଁ ପୂର୍ବରୁ ଯେଉଁ ସବୁ ତନ୍ତ ବ୍ୟବହୃତ ହୋଇ ଆସୁଥିଲା, ତାହାକୁ ବର୍ତ୍ତମାନ ଫୋପଡ଼ା ତନ୍ତ (Throw shuttle) କହନ୍ତି । ୧ ନମ୍ବର ଚିତ୍ର ଦେଖ । ସରକାରଙ୍କ ଯତ୍ନରେ ବର୍ତ୍ତମାନ ଗୋଟିଏ ଉନ୍ନତ ଧରଣର ତନ୍ତ ଅନେକ ସ୍ଥଳରେ ଚଳିଲାଣି । ସେହି ତନ୍ତକୁ ଠକ୍‌ଠକ ତନ୍ତ (Fly shuttle) କହନ୍ତି । କେହି କେହି ଏହାକୁ ଛିଟିକିଣି ତନ୍ତ ମଧ୍ୟ କହନ୍ତି । ୨ନମ୍ବର ଚିତ୍ର ଦେଖ ।



୧ ନମ୍ବର ଚିତ୍ର

ସରକାରଙ୍କ ସାହାଯ୍ୟରେ ଫୁଲ ଆଦି ଭିନ୍ନ ଭିନ୍ନ ପ୍ରକାର କମକାମ ବୁଣିବା ପାଇଁ ନାନା ପ୍ରକାର ଡବୀ (Dubbie) ବ୍ୟବହୃତ ହେଉଅଛି । ଅଧିକନ୍ତୁ ମଧ୍ୟ ଉନ୍ନତ ପ୍ରକାରର ମାକୁ,

କଣ୍ଡାକାଠ, ତାଖଣ ବଣିବାର ଡ୍ରମ (Drum) ବ୍ୟବହୃତ ହେଉଅଛି । ଏହି ସବୁ ଉନ୍ନତ ପ୍ରକାରର ତନ୍ତ ଆଦିର ବ୍ୟବହାରଦ୍ୱାରା ଲୁଗା ବୁଣିବାର ସୁବିଧା ବହୁପରିମାଣରେ ବଢ଼ିଅଛି ।



୨ ନମ୍ବର ଚିତ୍ର

ପୁରାତନ ତନ୍ତଦ୍ୱାରା ବୁଣିବା ସମୟରେ ମାକୁକୁ ହାତରେ ଧରି ଦୁଇ ପାଖରୁ ଫୋପାଡ଼ିବାକୁ ପଡ଼େ । ସେହି ହେତୁରୁ ପୁରାତନ ତନ୍ତକୁ ଫୋପଡ଼ା ତନ୍ତ କହନ୍ତି । ଠକ୍‌ଠକ ତନ୍ତର ନିମ୍ନରେ ଖଣ୍ଡିଏ ପଟା ଲାଗିଥାଏ । ପଟା ଖଣ୍ଡିକର ଦୁଇ ପ୍ରାନ୍ତରେ ଦୁଇଗୋଟି ଛୋଟ ଛୋଟ ଘର ଖଞ୍ଜା ଯାଇଥାଏ । ସେହି ଘରକୁ ବାକ୍‌ସ କହନ୍ତି । ସେହି ଘର ବା ବାକ୍‌ସ ଦୁଇଟିରେ ଛୋଟ ଛୋଟ ଦୁଇଟି ମେଣ୍ଢୀ ସହଜରେ ଯିବା ଆସିବା କରିବା ପାଇଁ ଖାପ ରଖାଯାଇଥାଏ । ୨ ନମ୍ବର ଚିତ୍ର ପରି ତନ୍ତରେ ଖଣ୍ଡିଏ ଡୋରି ଲାଗିଥାଏ । ସେହି ଡୋରିର ଦୁଇ ମୁଣ୍ଡ ମେଣ୍ଢୀ ଦୁଇଟି ସଙ୍ଗେ ବନ୍ଧା ହୋଇଥାଏ । ମଝିରେ ଆଉ ଖଣ୍ଡିଏ ମୁଠ ଲଗା ଯାଇଥାଏ । ସେହି ମୁଠଟି ଧରି ବାମ ଆଡ଼କୁ ଅଳ୍ପ ଜୋର୍ ଦେଇ ଝିଙ୍କିଦେଲେ ଡାହାଣ ପାଖରୁ ମେଣ୍ଢୀର ଆଘାତ ପାଇ ମାକୁଟି ବାଆଁ ପାଖକୁ ଗୁଳିଯାଏ ଏବଂ ଡାହାଣ ଆଡ଼କୁ ଜୋର୍ ଦେଇ ଝିଙ୍କି ଦେଲେ ମାକୁଟି ବାଆଁ ପାଖର ମେଣ୍ଢୀର ଆଘାତ ପାଇ ଡାହାଣ ପାଖକୁ ଗୁଳିଯାଏ । ପୁରୁଣା ଧରଣର ଫୋପଡ଼ା ତନ୍ତରେ ମାକୁକୁ ହାତରେ ଧରି ଫୋପାଡ଼ିବାକୁ ହୁଏ ଏବଂ ତାହା ଖାଲି ସୁତାଟି ଉପରେ ଯିବା ଆସିବା କରେ । ମାତ୍ର ଠକ୍‌ଠକ ତନ୍ତରେ ମାକୁଟି ତନ୍ତତଳେ ଲାଗିଥିବା ପଟା ଖଣ୍ଡିକ ଉପରେ ରହିଥିବା ସୁତା ଉପରେ ଯିବା ଆସିବା କରେ । ସେହି ହେତୁରୁ ଉପରୁ ଝୁଲିଥିବା ମୁଠଟି ଧରି ଯେଉଁ ଦଗକୁ ଅଳ୍ପ ଜୋର୍ ଦେଇ ଝିଙ୍କି ଦିଆଯାଏ, ମାକୁଟି ସହଜରେ ସେହି ଦଗକୁ ଗୁଳିଯାଏ । ପୁଣି ଦୁଇ ପ୍ରାନ୍ତରେ ମେଣ୍ଢୀ ଦୁଇଟିରେ ବାଜି ସହଜରେ ଫେରିଆସେ । ଥରେ ବାଆଁକୁ ଓ ଥରେ ଡାହାଣକୁ ଜୋର୍ ଦେଇ ଯେତେ ଶୀଘ୍ର ଝିଙ୍କି ପାରିବ, ଦୁଇ ପ୍ରାନ୍ତର ମେଣ୍ଢୀ ଦୁଇଟିରେ ବାଜି ମାକୁଟି ବାଆଁରୁ ଡାହାଣକୁ ଏବଂ ଡାହାଣରୁ ବାଆଁକୁ ସେତେ ବେଗରେ ସହଜରେ ଯିବା ଆସିବା କରି ପାରିବ; ତେଣୁ ଅଳ୍ପ ସମୟ ମଧ୍ୟରେ ଏହି ତନ୍ତଦ୍ୱାରା ଆର ତନ୍ତ ଅପେକ୍ଷା ବେଶୀ ଲୁଗା ବୁଣାଯାଇ ପାରେ ।

ଠକ୍‌ଠକ ତନ୍ତ ସାହାଯ୍ୟରେ ଜଣେ ତନ୍ତୀ ଦନକୁ ସହଜରେ ୧୦।୧୨ ଗଜ (ପ୍ରାୟ ୨୦।୨୨ ହାତ ) ଲୁଗା ବୁଣି ପାରିବ । କିନ୍ତୁ ପୁରୁଣା ଧରଣର ତନ୍ତଦ୍ୱାରା ୪।୫ ଗଜରୁ ଅଧିକ ବୁଣି ହେବ ନାହିଁ । ୧୯୨୧ ମସିହାରେ ପାଟଣାଠାରେ ଗୋଟିଏ ପ୍ରଦର୍ଶନୀ ହୋଇଥିଲା । ସେହି ପ୍ରଦର୍ଶନୀରେ ଠକ୍‌ଠକ ତନ୍ତଦ୍ୱାରା ଲୁଗା ବୁଣିବାର ପ୍ରତିଯୋଗିତାରେ ଜଣେ ତନ୍ତୀ ୮ ଘଣ୍ଟାରେ ୩୭ ଗଜ ଲୁଗା ବୁଣି ପ୍ରଥମ ପୁରସ୍କାର ପାଇଥିଲା । ୧୯୩୫ ମସିହାରେ ସେହିଠାରେ ଆଉ ଥରେ ପ୍ରଦର୍ଶନୀରେ ଲୁଗାବୁଣା ପ୍ରତିଯୋଗିତାରେ ୪୦ ନମ୍ବର ସୂତାର ଧୋତି ୪ ଘଣ୍ଟାରେ ୮ ଗଜ ବୁଣି ଜଣେ ତନ୍ତୀ ପ୍ରଥମ ପୁରସ୍କାର ପାଇଥିଲା । ଓଡ଼ିଶାର ବାଞ୍ଛାନିଧି ଘଡ଼େଇ ନାମକ ଜଣେ ତନ୍ତୀ ସେହି ସମୟ ମଧ୍ୟରେ ୨୫ ଗଜ ଲୁଗା ବୁଣି ସେହି ପ୍ରତିଯୋଗିତାରେ ତୃତୀୟ ପୁରସ୍କାର ପାଇଥିଲା ।

ଆହୁରି ମଧ ପୁରୁଣା ଢଙ୍ଗର ତନ୍ତରେ ମାକୁଟି ହାତରେ ଫୋପାଡ଼ିବାଦ୍ୱାରା ଲୁଗା ବୁଣା କାମ ହେଉଥିବାରୁ ଜଣେ ଲୋକର ଦୁଇ ପାଖରେ ହାତ ଯେତେ ଦୂର ଯାଇ ପାରିବ ତହିଁରୁ ଅଧିକ ଓସାରର ଲୁଗା ବୁଣାଯାଇ ପାରେ ନାହିଁ । ଠକ୍‌ଠକ ତନ୍ତରେ କେବଳ ମଝିରେ ବସି ମୁଠଟି ହିଁକିଦେଇ ଯେପରି ଟାଣିବ, ମାକୁଟି ସେହିପରି ଗତି କରିବ ଏବଂ ହାତର ଶକ୍ତି ଅନୁସାରେ ଦୁଇ ପାଖକୁ ମାକୁ ବହୁ ଦୂରକୁ ଯିବା ଆସିବା କରି ପାରିବ; ତେଣୁ ଏହି ତନ୍ତଦ୍ୱାରା ୬୦।୭୦ ଇଞ୍ଚ (୩।୪ ହାତ) ବା ତହିଁରୁ ବେଶୀ ଓସାରର ଲୁଗା ସହଜରେ ବୁଣାଯାଇ ପାରେ ।

ବୟନଶିଳ୍ପ ବିଷୟ ବିଶଦଭାବରେ ଲେଖିବାକୁ ଗଲେ ଗୋଟିଏ ବଡ଼ ପୁସ୍ତକ ହୋଇଯିବ । କିନ୍ତୁ ଆମର ଏହି ପୁସ୍ତକର ଉଦ୍ଦେଶ୍ୟ ପୃଥକ୍; ତେଣୁ ଏଥିରେ ବୟନଶିଳ୍ପ ସମ୍ବନ୍ଧରେ କେବଳ କେତେଗୁଡ଼ିଏ ସାଧାରଣ ଜାଣିବା ବିଷୟ ଲେଖାଯାଉଅଛି ଏବଂ ଯେଉଁ ଲୁଗାମାନ ସାଧାରଣତଃ ତନ୍ତୀମାନେ ବୁଣନ୍ତି ନାହିଁ, ସେହିପରି କେତେକ ଜାତର ଲୁଗା ବୁଣିବାର ପ୍ରଣାଳୀ ବିଶଦଭାବରେ ଉଲ୍ଲେଖ କରାଯାଉଅଛି । ଯଥା :—କୋର, ସତରଞ୍ଜି, ଗାଲିଚ୍, ତଉଲିଆ, ଝୋଟର ପଟି, ଦରି ଇତ୍ୟାଦି । ଏହି ପଦାର୍ଥମାନ ଯେ ତନ୍ତୀମାନେ ବୁଣି ପାରିବେ ନାହିଁ ତାହା ନୁହେଁ, କିନ୍ତୁ ସେମାନେ ସାଧାରଣତଃ ଏହାକୁ ବୁଣନ୍ତି ନାହିଁ; ନାନାପ୍ରକାର ପିନ୍ଧିବାର ଲୁଗାପଟା, ଗାମୁଛା ଇତ୍ୟାଦି ବୁଣନ୍ତି । ଏଭଳି ପଦାର୍ଥମାନ ତନ୍ତୀ ଏବଂ ଅନ୍ୟ ଯେ କେହି ବ୍ୟକ୍ତି ସହଜରେ ଆପଣା ଆପଣା ଘରେ ବୁଣି ପାରିବେ ।

କଳଦ୍ୱାରା ଲୁଗା ବୁଣା ହେଉ କିମ୍ବା ହାତ ତନ୍ତଦ୍ୱାରା ବୁଣା ହେଉ, ସବୁ ତନ୍ତରେ କଳସୂତାରେ ଖୁବ୍ ବେଶୀ ଲୁଗାବୁଣା କାମ ଚଳୁଛି । ହାତକଟା ସୂତା ଏପର୍ଯ୍ୟନ୍ତ ବେଶୀ ଚଳି ପାରି ନାହିଁ ।

କଳସୂତା ଗାଣ୍ଠି, ବଣ୍ଡଲ, ମୋଡ଼ା ଓ କେସ୍ କେସ୍ ହୋଇ ବନ୍ଧାଯାଇ କାରବାର ହୁଏ । ସେହି ସବୁ ଗାଣ୍ଠି, ବଣ୍ଡଲ, ମୋଡ଼ା ଓ କେସ୍‌ରେ କାହିଁରେ କେତେ ସୂତା ଥାଏ, ତାହା ଜାଣିବା ଏବଂ ସରୁ ଓ ମୋଟା ସୂତାକୁ କପରି ଶ୍ରେଣୀଭୁକ୍ତ କରି ବନ୍ଧାଯାଇଥାଏ, ଏଗୁଡ଼ିକ ଜାଣିବା ସମସ୍ତଙ୍କର ଦରକାର । ଏହି ବିବରଣଗୁଡ଼ିକ ନ ଜାଣିଥିଲେ କୌଣସି ଲୁଗା ଦେଖିଲେ ତହିଁରେ କେତେ ସୂତା ଓ କି ନମ୍ବରର ସୂତା ଲାଗିଅଛି କିମ୍ବା କୌଣସି ଲୁଗା ବୁଣାଇବାକୁ ହେଲେ ସେଥିନିମନ୍ତେ କେତେ ସୂତା ଓ କେଉଁ ନମ୍ବରର ସୂତା ଲୋଡ଼ା ହେବ, ତାହା ସହଜରେ ଜାଣି ହେବ ନାହିଁ; ତେଣୁ ସେ ସମ୍ବନ୍ଧରେ କେତେକ ବିବରଣ ନିମ୍ନରେ ଦିଆଗଲା :—

**ଗାଣ୍ଠି**—ସାଧାରଣତଃ ପ୍ରତି ଗାଣ୍ଠିରେ ୪୦ ବଣ୍ଡଲ ସୂତା ଥାଏ, ମାତ୍ର ଅନେକ ସମୟରେ ଏହି ସଂଖ୍ୟା ଠିକ୍ ନ ଥାଏ । କୌଣସି କୌଣସି ଗାଣ୍ଠିରେ ୮୦ ବଣ୍ଡଲ୍ ଓ ଆଉ କେତେକ ଗାଣ୍ଠିରେ ଭିନ୍ନ ଭିନ୍ନ ସଂଖ୍ୟାର ବଣ୍ଡଲ ରଖାଯାଇ ମଧ୍ୟ ଗାଣ୍ଠି ବନ୍ଧା ଯାଇଥାଏ । ଓଜନରେ ମଧ୍ୟ କେତେକ ଗାଣ୍ଠି ୩୦୦ ପାଉଣ୍ଡ, କେତେକ ୩୨୦ ପାଉଣ୍ଡ, କେତେକ ୪୦୦ ପାଉଣ୍ଡ ଓ କେତେକ ୫୦୦ ପାଉଣ୍ଡ ଥାଏ । ରଙ୍ଗିନ ସୂତାର ଗାଣ୍ଠିଗୁଡ଼ିକରେ କେଉଁ ଗାଣ୍ଠିରେ ୩୦୦ ପାଉଣ୍ଡ, କେଉଁଥିରେ ୨୫୦ ପାଉଣ୍ଡ ଏବଂ କେଉଁ କେଉଁ ଗାଣ୍ଠିରେ ୧୬୦ ପାଉଣ୍ଡ ଓଜନର ସୂତା ଥାଏ ।



୩ ନମ୍ବର ଚିତ୍ର

**ବଣ୍ଡଲ**—ସାଧାରଣତଃ ଯେତେ ନମ୍ବରର ସୂତା ସେତିକି ଗୋଟି ମୋଡ଼ା ଏକାଠି ବନ୍ଧାଯାଇ ଗୋଟିଏ ଗୋଟିଏ ବଣ୍ଡଲ୍ ବନ୍ଧା ହୋଇଥାଏ । ମାତ୍ର ଏହି ସଂଖ୍ୟା ମଧ୍ୟ ସବୁ ବଣ୍ଡଲରେ ସମାନ ନ ଥାଏ ।

**ମୋଡ଼ା**—ସାଧାରଣତଃ ପ୍ରତି ମୋଡ଼ାରେ ୧୦ କେସ୍ ଲେଖାଏଁ ସୂତା ଥାଏ । ମାତ୍ର ତାହା ମଧ୍ୟ ସବୁଥିରେ ଠିକ୍ ନ ଥାଏ । ୨ ନମ୍ବର ଠାରୁ ୧୪ ନମ୍ବର ପର୍ଯ୍ୟନ୍ତ ସୂତାର ପ୍ରତି ମୋଡ଼ାରେ ୫ କେସ୍ ଲେଖାଏଁ ସୂତା ଥାଏ । ୧୬ ନମ୍ବରଠାରୁ ୪୨ ନମ୍ବର ପର୍ଯ୍ୟନ୍ତ ସୂତାର ପ୍ରତି ମୋଡ଼ାରେ ୧୦ କେସ୍ ଲେଖାଏଁ ଏବଂ ୪୪ ଠାରୁ ତହିଁର ଉପର ନମ୍ବର ସୂତାର ପ୍ରତି ମୋଡ଼ାରେ ୨୦ କେସ୍ ଲେଖାଏଁ ସୂତା ଥାଏ

**ଫେରା** — ପ୍ରତି ଫେରରେ ୭ ପଣ ଲେଖାଏଁ ସୂତା ଥାଏ ଏବଂ ପ୍ରତି ଫେରରେ ସୂତା-ଗୁଡ଼ିକ ପଣ ପଣ ହୋଇ ଭାଗ କରାଯାଇ ଖଣ୍ଡିଏ ଅଲଗା ସୂତାରେ ବନ୍ଧା ହୋଇଥାଏ ।

**ପଣ** — ପ୍ରତି ପଣର ସୂତାରେ ୨୦ ଗଣ୍ଡା ସୂତା ବନ୍ଧା ହୋଇଥାଏ । ଯେଉଁ ନମ୍ବର ସୂତା ହେଲେ ମଧ୍ୟ ତହିଁରେ ଏହି ପଣ ହିସାବଟି ଠିକ୍ ଥାଏ ଏବଂ ତହିଁର ଲମ୍ବା ୧୨୦ ଗଜ ରଖା-ଯାଇଥାଏ ।

ଯେ କୌଣସି ନମ୍ବର ସୂତା ହେଲେ ମଧ୍ୟ ପଣ ଓ ଫେରର ମାପ ସବୁ ସୂତାର ସମାନ ଥାଏ; ତେଣୁ ସେହି ମାପଟି ଜାଣି ରଖିଲେ ଯେ କୌଣସି ନମ୍ବରର ସୂତାରେ ବୁଣା ହୋଇଥିବା ଲୁଗାରେ ଲାଗିଥିବା ସୂତାର ପରିମାଣ ବା ଯେ କୌଣସି ନମ୍ବର ସୂତାରେ କୌଣସି ଲୁଗା ବୁଣାଇବାକୁ ହେଲେ ତହିଁରେ କେତେ ସୂତା ଲାଗିବ; ତହିଁର ପରିମାଣ ଜାଣିବାପାଇଁ ଫେରକୁ ମୂଳ କରି ହିସାବ କରିବାକୁ ହେବ । ସେଥିପାଇଁ ପ୍ରଥମେ ସୂତାର ନମ୍ବର ଓ ପାନିଆର ନମ୍ବର ସ୍ଥିର କରି ତା ପରେ ହିସାବ କରିବ । ଗୋଟିଏ ଲୁଗାରେ କେତେ ସୂତା ଲାଗିବ; ତାହା ଜାଣିବାପାଇଁ ତନ୍ତରେ ବ୍ୟବହୃତ ହେଉଥିବା ପାନିଆ ବିଷୟ ଆଗେ ନ ଜାଣିଲେ ସତାର ପରିମାଣ ସ୍ଥିର କରି ହେବ ନାହିଁ, ତେଣୁ ଏଠାରେ ପାନିଆ ସମ୍ବନ୍ଧରେ କେତେକ ବିଷୟ ଉଲ୍ଲେଖ କରାଗଲା । ତା ପରେ କେତେଗୋଟି ହିସାବ ଅଙ୍କରେ କଷି ଦେଖାଇ ଦିଆଯିବ । ସେହି ହିସାବ ବୁଝିଲେ କେଉଁ ଲୁଗାପାଇଁ କେତେ ସୂତା ଆବଶ୍ୟକ ବା କେଉଁ ଲୁଗାଟିରେ କେତେ ସୂତା ଲାଗିଅଛି, ତାହା ଯେ କୌଣସି ବ୍ୟକ୍ତି ସହଜରେ ହିସାବ କରି ସ୍ଥିର କରି ପାରିବେ ।

## ପାନିଆ

ପାନିଆ ତନ୍ତର ଗୋଟିଏ ପ୍ରଧାନ ଅଙ୍ଗ । ପାନିଆ ବ୍ୟତୀତ ତନ୍ତରେ ଲୁଗା ବୁଣାଯାଇ ପାରିବ ନାହିଁ । ମୋଟା ସୂତା ବୁଣିବାପାଇଁ ପାତଳ ପାନିଆ ଓ ସରୁ ସୂତା ବୁଣିବାପାଇଁ ଘନ ପାନିଆ ଲୋଡ଼ା ହୁଏ । ଯେ କୌଣସି ପାନିଆର ପ୍ରଥମ ଏକ ଇଞ୍ଚ ସ୍ଥାନରେ ଯେତେଗୋଟି କାଡ଼ି ଲାଗିଥାଏ ତହିଁର ଶେଷ ପର୍ଯ୍ୟନ୍ତ ପ୍ରତି ଇଞ୍ଚରେ ଠିକ୍ ସେତିକି ଲେଖାଏଁ କାଡ଼ି ଲାଗିଥାଏ । ପାନିଆର ପ୍ରତି ଇଞ୍ଚରେ କାଡ଼ିର ସଂଖ୍ୟା ଯେତେ କମ୍ ଥାଏ, ତାହାକୁ ତେତେ ପାତଳ ପାନିଆ



୪ ନମ୍ବର ଚିତ୍ର

କୁହାଯାଏ ଏବଂ ପ୍ରତି ଇଞ୍ଚରେ କାଡ଼ିର ସଂଖ୍ୟା ଯେତେ ଅଧିକ ଥାଏ, ତାହାକୁ ତେତେ ଘନ ପାନିଆ କୁହାଯାଏ । କାଡ଼ିର ସଂଖ୍ୟା ଅନୁସାରେ ପାନିଆର ନମ୍ବର ସ୍ଥିର କରାଯାଏ ।

ପାନିଆର ପ୍ରତି ଇଞ୍ଚରେ ଯେତେଗୋଟି କାଡ଼ୀ ଥାଏ, ସେହି ଅନୁସାରେ ପାନିଆର ଘରର ସଂଖ୍ୟା ଜଣାପଡ଼େ । ଗୋଟିଏ ପାନିଆର ଏକ ଇଞ୍ଚ ସ୍ଥାନ ମଧ୍ୟରେ ଯେବେ ୨୪ ଗୋଟି କାଡ଼ୀ ଲାଗିଥିବ, ତେବେ ସେହି ଏକ ଇଞ୍ଚ ସ୍ଥାନ ମଧ୍ୟରେ ୨୪ ଗୋଟି ଘର ଥିବ । ଲୁଗା-ବୁଣିବାପାଇଁ ସୂତା ପାନିଆରେ ଖଞ୍ଜିଲାବେଳେ ପ୍ରତି ଘରେ ଦୁଇଗୋଟି ଲେଖାଏଁ ସୂତା ଖଞ୍ଜିବାକୁ ହୁଏ । ଏହି ୨୪ ଗୋଟି ଘରରେ ୪୮ ଗୋଟି ସୂତା ଦିଆଯିବ, ତେଣୁ ଏହି ପାନିଆଟିକୁ ୪୮ ନମ୍ବର ପାନିଆ କୁହାଯିବ । ସବୁ ପାନିଆରେ ସବୁ ନମ୍ବରର ସୂତା ବୁଣାଯାଇ ପାରିବ ନାହିଁ । ପାନିଆର ନମ୍ବର ଯେତେ ବେଶୀ ହେବ, ତାହାଁର ଘରଗୁଡ଼ିକ ତେତେ ଛୋଟ ହେବ । ଛୋଟ ଘରେ ମୋଟ ସୂତା ଲାଗି ପାରିବ ନାହିଁ ।

କେଉଁ କେଉଁ ନମ୍ବର ପାନିଆରେ କେଉଁ କେଉଁ ନମ୍ବରର ସୂତା ବୁଣାଯାଇ ପାରିବ ତାହାଁର ଗୋଟିଏ ତାଲିକା ନିମ୍ନରେ ଦିଆଗଲା । ଯଥା :—

| ସୂତାର ନମ୍ବର | | | ପାନିଆର ନମ୍ବର |
|---|---|---|---|
| ୧୦ ନମ୍ବର | ... | ... | ୨୪ ନମ୍ବର ଠାରୁ ୨୮ ନମ୍ବର |
| ୧୨ ,, | ... | ... | ୨୮ ,, ,, ୩୨ ,, |
| ୧୬ ,, | ... | ... | ୩୨ ,, ,, ୩୬ ,, |
| ୨୦ ,, | ... | ... | ୩୬ ,, ,, ୪୦ ,, |
| ୨୮ ,, | ... | ... | ୪୦ ,, ,, ୪୨ ,, |
| ୩୨ ,, | ... | ... | ୪୨ ,, ,, ୪୪ ,, |
| ୪୦ ,, | ... | ... | ୪୮ ,, ,, ୫୨ ,, |
| ୫୦ ,, | ... | ... | ୫୨ ,, ,, ୫୮ ,, |
| ୬୦ ,, | ... | ... | ୫୮ ,, ,, ୬୨ ,, |
| ୭୦ ,, | ... | ... | ୬୨ ,, ,, ୬୪ ,, |
| ୮୦ ,, | ... | ... | ୬୬ ,, ,, ୭୨ ,, |
| ୯୦ ,, | ... | ... | ୭୨ ,, ,, ୭୮ ,, |
| ୧୦୦ ,, | ... | ... | ୭୮ ,, ,, ୮୦ ,, |
| ୧୧୦ ,, | ... | ... | ୮୦ ,, ,, ୮୨ ,, |
| ୧୨୦ ,, | ... | ... | ୮୨ ,, ,, ୮୬ ,, |

**ପେଟଖୋଲ ପାନିଆ—**ପୂର୍ବେ ଯେତେବେଳେ କଳସୂତା ବାହାରି ନ ଥିଲା ତେତେବେଳେ କେବଳ ହାତକଟା ସୂତାରେ ସବୁ ଲୁଗା ବୁଣା ହେଉଥିଲା । ତନ୍ତୀମାନେ ସେ ସମୟରେ ଲୁଗା ବୁଣିବାପାଇଁ ଯେଉଁ ସବୁ ପାନିଆ ବ୍ୟବହାର କରୁଥିଲେ, ସାଧାରଣତଃ ତହିଁରେ ସବୁ ସ୍ଥାନରେ ସମାନ ସଂଖ୍ୟାର କାଡ଼ୀ ରହୁ ନ ଥିଲା । ପାନିଆଟିର ଦୁଇ ମୁଣ୍ଡରେ ଅଧିକ କାଡ଼ୀ ରଖି ମଝିରେ କମ କାଡ଼ୀ ରଖୁଥିଲେ । ଅର୍ଥାତ୍ ପାନିଆର ଦୁଇ ମୁଣ୍ଡକୁ ଘନ ରଖି ମଝି ପାତଳ କରୁଥିଲେ । କାରଣ ହାତକଟା ସୂତା ଯେତେ ଉତ୍କୃଷ୍ଟ ହେଲେ ମଧ୍ୟ ସବୁ ସମୟରେ ଏକସମାନ ମୋଟର ସୂତା ମିଳୁ ନ ଥିଲା । ସେହି ହେତୁରୁ ତନ୍ତୀ ସୂତାଗୁଡ଼ିଏ ପାଇଲେ ପ୍ରଥମେ ତହିଁରୁ ସରୁ ମୋଟା ସୂତାଗୁଡ଼ିକ ଅଲଗା ଅଲଗା କରି ବାଛି ଭାଗ କରୁଥିଲେ । ପାନିଆର ଦୁଇ ମୁଣ୍ଡରେ ସରୁ ସୂତା ଖଞ୍ଜି ମୋଟ ସୂତାକୁ ମଝିରେ ଦେଉଥିଲେ । ସେଥିନିମନ୍ତେ ସେମାନେ ପେଟଖୋଲ ପାନିଆ ବ୍ୟବହାର କରିବାକୁ ବାଧ୍ୟ ହେଉଥିଲେ । ସେହି ପାନିଆରେ ଲୁଗାଟି ବୁଣିସାରି ତାହାକୁ ଧୋଇ ଘସ ଘସି କରିଦେଲେ ଲୁଗାଟି କ୍ରମେ ସମତୁଲ ହୋଇ ଯାଉଥିଲା ।

କଳସୂତାରେ ଯେଉଁ ନମ୍ବରର ସୂତା ନେବ, ତହିଁର ସବୁ ଖିଅଗୁଡ଼ିକର ମୋଟା ସବୁଠାରେ ସମାନ; ତେଣୁ କଳସୂତାରେ ବୁଣିବାକୁ ହେଲେ ଆଉ ପେଟଖୋଲ ପାନିଆର ଆବଶ୍ୟକ ନାହିଁ । ପେଟଖୋଲ ପାନିଆରେ କଳସୂତା ବୁଣିଲେ ଲୁଗାଟିର ଦୁଇପାଖ ଘନ ହୋଇ ମଝି ପାତଳ ହୋଇଯିବ ଏବଂ ଲୁଗାଟି ମଝିରୁ ଶୀଘ୍ର ଚିରିଯିବ ।

ଖଣ୍ଡିଏ ଲୁଗା ବୁଣିବାପାଇଁ କେତେ ସୂତା ଆବଶ୍ୟକ, ତାହା ଜାଣିବାକୁ ହେଲେ ପ୍ରଥମେ ସ୍ଥିର କରିବ ଯେ କେତେ ନମ୍ବର ପାନିଆରେ ତାହା ବୁଣାଯିବ । ତା ପରେ ନିମ୍ନଲିଖିତ ମତେ ହିସାବ କଲେ ସୂତାର ପରିମାଣ ସହଜରେ ଜାଣି ପାରିବ ।

$$\frac{\text{ପାନିଆର ନମ୍ବର} \times \text{ଲୁଗାର ଲମ୍ବା ଯେତେ ଗଜ} \times \text{ଲୁଗାର ଚଉଡ଼ା ଯେତେ ଗଜ}}{\text{ଏକ କେଙ୍ଗ ସୂତାର ଲମ୍ବା}}$$

= ଟାଣୀ ନିମନ୍ତେ ଆବଶ୍ୟକ ସୂତାର କେଙ୍ଗର ପରିମାଣ । ଅର୍ଥାତ୍ ପାନିଆର ନମ୍ବର ସଙ୍ଗେ ଲୁଗାର ଲମ୍ବ ଯେତେ ଗଜ ଓ ଲୁଗାର ଚଉଡ଼ା ଯେତେ ଗଜ ତାହାକୁ ଗୁଣି ଗୁଣଫଳକୁ ଏକ କେଙ୍ଗ ସୂତାର ଲମ୍ବ ଦ୍ୱାରା ହରଣ କଲେ ଯାହା ଫଳ ହେବ, ସେତକ ସେ ଲୁଗାର ଟାଣୀ ନିମନ୍ତେ ଦରକାର । ସୂତାର ପରିମାଣ ସେତକ କେଙ୍ଗ ବୋଲି ସ୍ଥିର କରିବ ।

ଗୋଟିଏ ଲୁଗା ନିମନ୍ତେ ଟାଣୀରେ ଯେତକ ସୂତା ଲାଗେ, ଭରଣୀରେ ମଧ୍ୟ ଠିକ୍ ସେହି ପରିମାଣର ସୂତା ଲାଗିବ ।

ଏକ କେସ୍ ସୂତାର ଲମ୍ବା ୮୪୦ ଗଜ, କିନ୍ତୁ ଲୁଗାଟି ବୁଣି ଶେଷ କରିବା ପର୍ଯ୍ୟନ୍ତ ନାନା ପ୍ରକାରରେ କିଛି କିଛି ସୂତା ନଷ୍ଟପ୍ରାୟ ନଷ୍ଟ ହେବ । ତେଣୁ ହିସାବ କଲାବେଳେ ସାଧାରଣତଃ ପ୍ରତି-କେସ୍‌କୁ ୮୦୦ ଗଜ ଧରି ହିସାବ କରାଯାଏ । ଯେବେ ୪୦ ନମ୍ବର ପାନଅଦ୍ଧାରେ ୪୨ ଇଞ୍ଚ ଓସାରର ୫ ଗଜ ଲୁଗା ବୁଣିବାକୁ ଇଚ୍ଛା କରିବ, ତେବେ ସେଥିନିମନ୍ତେ କେତେ ସୂତା ଲାଗିବ ତାହା ସ୍ଥିର କରିବାପାଇଁ ନିମ୍ନଲିଖିତମତେ ହିସାବ କରିବ ।

୪୦ × ୪୨ = ୧୬୮୦ ଗୋଟି ଖିଅ ଟାଣୀରେ ଲାଗିବ । ୧୬୮୦ × ୫ = ୮୪୦୦ ଗଜ ସେହି ଟାଣୀ ସୂତାର ଲମ୍ବା ହେବ ।

ଟାଣୀରେ ଯେତିକି ସୂତା ଲାଗିବ ଭରଣୀରେ ମଧ୍ୟ ଠିକ୍ ସେତିକି ସୂତା ଲାଗିବ । ତାହା-ହେଲେ ଉପରୋକ୍ତ ଲୁଗା ଖଣ୍ଡିକପାଇଁ ୮୦୦୦ + ୮୪୦୦ = ୧୬୮୦୦ ଗଜ ସୂତା ଆବଶ୍ୟକ ।

ପ୍ରତିକେସ୍‌ରେ ୮୪୦ ଗଜ ସୂତା ଥାଏ । ପୂର୍ବେ କୁହାଯାଇଅଛି ହିସାବ କଲାବେଳେ କେସ୍‌କୁ ୮୦୦ ଗଜରେ ହିସାବ ହୁଏ; ତେଣୁ ଏଠାରେ ୧୬୮୦୦ ÷ ୮୦୦ = ୨୧ କେସ୍ ସୂତା ଲାଗିବ । ଅର୍ଥାତ୍

$$\frac{୪୦ \times ୪୨ \times ୫}{୮୦୦} = \frac{୨୧}{୨} = ୧୦\frac{୧}{୨}$$ କେସ୍ ଟାଣୀ ନିମନ୍ତେ

$+ ୧୦\frac{୧}{୨}$ କେସ୍ ଭରଣୀ ନିମନ୍ତେ

ମୋଟ ୨୧ କେସ୍ ସୂତା ଦରକାର ହେବ ।

୬୦ ନମ୍ବର ସୂତାରେ ୬୨ ନମ୍ବର ପାନଅଦ୍ଧାରେ ୪୭ ଇଞ୍ଚ ଓସାର ୯ ହାତ ଲମ୍ବ ଗୋଟିଏ ଲୁଗା ବୁଣିବାକୁ ହେଲେ ସେଥି ନିମନ୍ତେ କେତେ ସୂତା ଲୋଡ଼ା ହେବ, ତାହା ସ୍ଥିର କରିବାପାଇଁ ନିମ୍ନଲିଖିତ ମତେ ହିସାବ କରିବ ।

୬୨ × ୪୭ = ୨୯୧୪ ଗୋଟି ଖିଅ ଟାଣୀରେ ଲାଗିବ ।

୨୯୧୪ × ୯ = ୨୬୨୨୬ ହାତ ସୂତାର ଲମ୍ବା ହେବ ।

୨୬୨୨୬ ÷ ୨ = ୧୩୧୧୩ ଗଜ

୧୩୧୧୩ ÷ ୮୦୦ = $୧୬\frac{୩୧୩}{୮୦୦}$ ପ୍ରାୟ ... ... $୧୬\frac{୧}{୨}$ କେସ୍ ।

ଭରଣୀ ନିମନ୍ତେ ମଧ୍ୟ ଠିକ୍ ସେହି ପରିମାଣରେ ସୂତା $+ ୧୬\frac{୧}{୨}$ କେସ୍ ।

= ୩୩ କେସ୍ ଲାଗିବ ।

ଯେବେ ପ୍ରତି ୧ ଖଣ୍ଡ ଲୁଗାପାଇଁ ୩୩ କେସ୍ ସୂତା ଲୋଡ଼ା ହୁଏ, ତେବେ ୬୦ ନମ୍ବରର ୧ ବଣ୍ଡଲ୍ ସୂତାରେ କେତେ ଗୋଟି ଲୁଗା ହେବ ତାହା ସ୍ଥିର କରିବାପାଇଁ ପ୍ରଥମେ ସେହି ବଣ୍ଡଲରେ କେତେ କେସ୍ ସୂତା ଅଛି ଗଣି କରି ସ୍ଥିର କରିବ । ଯେତେ କେସ୍ ସୂତା ହେବ, ତାହାକୁ ୩୩ ଦ୍ୱାରା ଭାଗ କଲେ ଲୁଗାର ସଂଖ୍ୟା ଜଣାପଡ଼ିବ ।

ସେହିପରି ୧ ଗାଣ୍ଠି ସୂତାରୁ କେତେ ଲୁଗା ହେବ ତାହା ଜାଣିବାକୁ ହେଲେ ଗାଣ୍ଠିରେ କେତେ ବଣ୍ଡଲ ସୂତା ଅଛି ଓ ପ୍ରତି ବଣ୍ଡଲରେ କେତେ ମୋଡ଼ା ଓ ପ୍ରତି ମୋଡ଼ାରେ କେତେ କେସ୍ ସୂତା ଅଛି, ତାହା ବୁଝି ସମସ୍ତ ଗାଣ୍ଠିରେ କେତେ କେସ୍ ସୂତା ଅଛି ତାହା ନିର୍ଣ୍ଣୟ କରିବ। ତାପରେ ଗୋଟିଏ ଲୁଗାରେ ଯେତେ କେସ ସୂତା ଲଗିବ, ତାହା ସ୍ଥିର କରି ସେହି ସଂଖ୍ୟାଦ୍ୱାରା ହରଣ କଲେ ଲୁଗାର ସଂଖ୍ୟା ସହଜରେ ଜଣାପଡ଼ିବ ।

କୌଣସି ଗୋଟିଏ ଲୁଗାରେ କେତେ ସୂତା ଲଗିଅଛି, ତାହା ସ୍ଥିର କରିବାକୁ ହେଲେ ପ୍ରଥମେ ସେହି ଲୁଗାଟି କେତେ ନମ୍ବର ସୂତାରେ ବୁଣା ହୋଇଅଛି, ତାହା ଦେଖି ପରୀକ୍ଷା କରି ସ୍ଥିର କରିବ । ତା ପରେ ଲୁଗାଟିର ଯେ କୌଣସି ଅଂଶରୁ ମାପ କରି ୧ ଇଞ୍ଚ ପରିମିତ ଅଂଶରେ କେତେ ଗୋଟି ଠାଣୀ ସୂତା ଅଛି, ତାହା ଗୋଟିଏ ପିନ୍‌କଣ୍ଟା ସାହାଯ୍ୟରେ ଗଣିନେବ । ଗଣିଲେ ଠାଣୀ ସୂତା ଯେତୋଟି ଥିବ ତହିଁରୁ ବୁଝି ପାରିବ ଯେ, ତହିଁର ଅର୍ଦ୍ଧ ସଂଖ୍ୟାର ନମ୍ବର ପାନିଆରେ ସେହି ଲୁଗା ବୁଣାଯାଇଅଛି । ସୂତାର ନମ୍ବର ଏବଂ ପାନିଆର ନମ୍ବର ଜାଣି ପାରିଲେ ପୂର୍ବ ଲିଖିତ ହିସାବ ଅନୁସାରେ ହିସାବ କରି ସହଜରେ ସୂତାର ପରିମାଣ ସ୍ଥିର କରି ପାରିବ । ଲୁଗାରୁ ସୂତାର ପରିମାଣ ସ୍ଥିର କରିବା କାରଣ ଖଣ୍ଡିଏ କାଚ ବ୍ୟବହୃତ ହୁଏ । ତାହା କିଣିବାକୁ ମିଳେ । ତାହାକୁ ଗଣନା କାଚ (Counting glass) କହନ୍ତି । ତହିଁ ସାହାଯ୍ୟରେ ସୂତାଗୁଡ଼ିକ ଅଧିକ ବଡ଼ ଦେଖାଯାଏ; ତେଣୁ ସୂତାର ସଂଖ୍ୟା ସହଜରେ ଗଣନା କରାଯାଇ ପାରେ ।

ଯେ କୌଣସି ବୟନଶିଳ୍ପରେ ଠାଣୀ ପ୍ରସ୍ତୁତ କରିବା ଏବଂ ବଅ ବାନ୍ଧିବା ଗୋଟିଏ ଗୋଟିଏ ପ୍ରଧାନ କାର୍ଯ୍ୟ । ଏହା ଲୁଗା ବୁଣିବାରେ ଯେପରି ଆବଶ୍ୟକ ସତରଞ୍ଜି, ଗାଲିଚ୍ଚା, କମ୍ବଳ ପଟା ପ୍ରଭୃତି ବୁଣିବାପାଇଁ ମଧ୍ୟ ସେହିପରି ଆବଶ୍ୟକ; ତେଣୁ ଠାଣୀ ଓ ବଅ ବିଷୟ ପ୍ରଥମେ ଜାଣିବା ପ୍ରୟୋଜନ ।

**ଠାଣୀ**—ସୂତା, ଝୋଟ, ରେଶମ, ପାଟ, ଛଣି ବା ଯେ କୌଣସି ପଦାର୍ଥର ଯାହା କିଛି ବୁଣିବାକୁ ଇଚ୍ଛା କରିବ, ତହିଁ ମଧ୍ୟରୁ ଏକପରସ୍ତ ଯେ କୌଣସି ଉପାୟରେ ଲମ୍ବ ଭାବରେ, ଉତ୍ତମରୂପେ ଦୁଇ ପ୍ରାନ୍ତରୁ ଭିଡ଼ି ଠାଣି ରଖିବାକୁ ହେବ । ତନ୍ତଦ୍ୱାରା ହେଉ ବା ଅନ୍ୟ ଯେ କୌଣସି ଯନ୍ତ୍ରଦ୍ୱାରା ହେଉ, ତହିଁରେ ଏହି ଏକସର ଯେପରି ଉତ୍ତମରୂପେ ଠାଣି ହୋଇ ରହି ପାରିବ, ତହିଁର ବ୍ୟବସ୍ଥା କରିବାକୁ ହେବ । ଏହିପରି ଠାଣି ହୋଇ ରହିବା ସର ବା ଖିଅ ପରସ୍ତକୁ **ଠାଣୀ** କହନ୍ତି, ୫ ନମ୍ବର ଚିତ୍ର ଦେଖ ।



୫ ନମ୍ବର ଚିତ୍ର ।

**ଭରଣୀ** – ଟାଣୀରେ ଫାନ୍ଦ ଉଠାଇ ଯେଉଁ ସୂତା ପରକ ବାଆଁରୁ ଡାହାଣକୁ ଓ ଡାହାଣରୁ ବାଆଁକୁ ବୁଣାଯାଏ ତାହାକୁ ଭରଣୀ କହନ୍ତି ।

**ବଅ** – ଭରଣୀ ସୂତା ବୁଣିବା କାରଣ ଟାଣୀର କେତେକ ଖିଅ ତଳକୁ ରଖି ଓ କେତେକ ଖିଅ ଉପରକୁ ଉଠାଇ ଦେଲେ ଯେଉଁ ଫାଙ୍କ ହୋଇଯାଏ ତହିଁ ମଧ୍ୟରେ ଭରଣୀ ସୂତାକୁ ପୁରାଇ ବୁଣିବାକୁ ପଡ଼େ । ଏହାପରି ଟାଣୀର ଖିଅକୁ ଭାଗ କରି ଉଠାଇବା ଓ ପକାଇବା କାରଣ ପ୍ରଥମରୁ ସେଗୁଡ଼ିକୁ ଆବଶ୍ୟକ ଅନୁସାରେ ଭାଗ କରି ପ୍ରତି ଖିଅକୁ ଖଣ୍ଡିଏ ଡୋରଦ୍ୱାରା ଛନ୍ଦି ଖଣ୍ଡିଏ କାଠିରେ ଗୁନ୍ଥି ରଖିବାକୁ ପଡ଼େ । ଏହିପରି ଛନ୍ଦିବା ଡୋରର ପ୍ରତି ଫେରକୁ ବଅ କହନ୍ତି । ପ୍ରତି ଫେର ବଅକୁ ସମାନ ମାପରେ ବାନ୍ଧିବାକୁ ପଡ଼େ । ତାହାହେଲେ ସବୁ ସୂତାଗୁଡ଼ିକ ସମାନ ଭାବରେ ଏକ ସମୟରେ ଉପରକୁ ଉଠେ ବା ତଳକୁ ପଡ଼ିଯାଏ ।

ସାଧାରଣତଃ ବଅ ଉତ୍ତମ ଓ ଶକ୍ତ ସତାର ଡୋରଦ୍ୱାରା କରାଯାଇଥାଏ । ଏହା ଗୋଟିଏ ଡୋରଦ୍ୱାରା ସମାନଭାବରେ ବାନ୍ଧି ଗୋଟିଏ ଗୋଟିଏ ଧାଡ଼ିରେ ପ୍ରସ୍ତୁତ କରାଯାଏ । ଏହାର ବିସ୍ତୃତ ବିବରଣ ଓ ଚିତ୍ର ପରେ ବିଶଦ-ଭାବରେ ବର୍ଣ୍ଣିତ ହେବ । ବଅର ପ୍ରତ୍ୟେକ ଫେରକୁ ସ୍ୱତନ୍ତ୍ର ଗୋଟି ଗୋଟି କରି ମଧ୍ୟ କରାଯାଏ । ଆଜିକାଲି ସୂତାର ବଅ ପରିବର୍ତ୍ତିରେ ତାରର ବଅ ମଧ୍ୟ ଅନେକ ସ୍ଥଳରେ ବ୍ୟବହୃତ ହେଉଅଛି । ତାରର ବଅ ସ୍ୱତନ୍ତ୍ର ଗୋଟିଏ ଗୋଟିଏ ହୋଇଥାଏ । ୬ ନମ୍ବର ଚିତ୍ରରେ ଗୋଟିକିଆ ସୂତା ବଅର ଗୋଟିଏ ଫେର ଏବଂ ତାର ବଅର ଗୋଟିଏ ଫେର ଦେଖାଇ ଦିଆଯାଇଅଛି ।



୬ ନମ୍ବର ଚିତ୍ର



୭ ନମ୍ବର ଚିତ୍ର

ତନ୍ତ୍ରରେ ବ୍ୟବହୃତ ହେଉଥିବା ଅନ୍ୟ ଉପକରଣମାନଙ୍କ ମଧ୍ୟରେ ମାକୁ ଏବଂ କଣ୍ଢା ଗୋଟିଏ ଗୋଟିଏ ପ୍ରଧାନ ଅଙ୍ଗ । ମାକୁ ବର୍ତ୍ତମାନ ନାନା ପ୍ରକାରର ତିଆରି ହେଲାଣି । ୭ ନମ୍ବର



ଚିତ୍ରରେ କେତେଗୋଟି ମାକୁର ଭିନ୍ନ ଭିନ୍ନ ଆକାର ଦେଖାଇ ଦିଆଗଲା। ୮ ନମ୍ବର ଚିତ୍ରରେ କଣ୍ଡାକାଠିର ଆକାର ଦିଆଗଲା।



୮ ନମ୍ବର ଚିତ୍ର

---

# ଫିତା ବା ନେଉଆର

ଫିତା ବୁଣିବା କାରଣ ଉପକରଣ ମଧ୍ୟରେ ଆବଶ୍ୟକ କେବଳ ଖଣ୍ଡିଏ ହତା ଓ ଓ ଦୁଇଖଣ୍ଡ ମାଡ଼ି ଡାଙ୍ଗି।

**ହତା**—ଦୁଇ ଇଞ୍ଚ ଚଉଡ଼ା ଓ ୧୫ ଇଞ୍ଚ ଲମ୍ବା ଖଣ୍ଡିଏ ମୋଟ ଲୁହା ପାତର ଏକ ପ୍ରାନ୍ତରେ ଗୋଟିଏ ମୂଠା ଲଗାଇଦେଲେ ସୁନ୍ଦର ହତାଟିଏ ହେବ। ୧ ନମ୍ବର ଚିତ୍ର ଦେଖ।



୧ ନମ୍ବର ଚିତ୍ର

**ମାଡ଼ି ଡାଙ୍ଗି**—ଦେଢ଼ଇଞ୍ଚ ମୋଟ ଓ ଏକ ହାତ ଲମ୍ବା ଦୁଇଖଣ୍ଡ କାଠ ବା ବାଉଁଶ ଗୋଟିଏ ଖିଲଦ୍ୱାରା ଖଣ୍ଡିଏ ଖୁଣ୍ଟିରେ ଲାଗିଥାଏ ୨ ନମ୍ବର ଚିତ୍ର ଦେଖ।



୨ ନମ୍ବର ଚିତ୍ର

ଯେ କୌଣସି ନମ୍ବରର ସୂତାକୁ ୫ ଖିଅ ବା ୭ ଖିଅ କରି ଅରଟଦ୍ୱାରା ବଳି ପ୍ରଥମେ ଗୋଟିଏ ଠାଣୀ ପ୍ରସ୍ତୁତ କରିବ।



୩ ନମ୍ବର ଚିତ୍ର



ସୂତାକୁ ଦୁଇଖିଅ ବା ତହିଁରୁ ଅଧିକ ଖିଅ କରିବାର ଆବଶ୍ୟକ ହେଲେ ଅପର ପାର୍ଶ୍ୱର ୩ ନମ୍ବର ଚିତ୍ର ପରି ଗୋଟିଏ ବଡ଼ ତରଖିରେ ୨ କେଉ ବା ତହିଁରୁ ଯେତେ ଅଧିକଗୋଟି ଖିଅ ଏକତ୍ର କରିବାକୁ ଇଚ୍ଛା କରୁଥିବ, ତେତେ କେଉ ସୂତା ପୃଥକ ପୃଥକ୍ କରି ରଖି ପ୍ରତି କେଉରୁ ଗୋଟିଏ ଲେଖାଏଁ ଖିଅ ଆଣି ଏକତ୍ର ଧରି ତାହାକୁ ନଟେଇ ଉପରେ ବୁଲାଇ ନେଲେ ୨ ଖିଅ, ୩ ଖିଅ ବା ୪ ଖିଅ ବା ଯେତେ ଖିଅ କରିବାକୁ ଇଚ୍ଛା କର, ତାହା ସହଜରେ କରି ପାରିବ । ୩ ଓ ୪ ନମ୍ବର ଚିତ୍ର ଦେଖ ।

ଦୁଇ ବା ତତୋଽଧିକ ଖିଅ ଏକତ୍ର ବଳିବାକୁ ହେଲେ ତାହା ସାଧାରଣତଃ ଗୋଟିଏ ଅରଟଦ୍ୱାରା ବଳାଯାଇ ପାରିବ ।

୪ ନମ୍ବର ଚିତ୍ର

ନମ୍ବର ଚିତ୍ରଟିରେ ଏକାବେଳକେ ୩ ଗୋଟି ଖିଅ ଏକତ୍ର କରି ସଙ୍ଗେ ସଙ୍ଗେ ତାହା ବଳି ନେଉଥିବାର ଚିତ୍ର ଦେଖାଇ ଦିଆଯାଇଅଛି । ୫ ନମ୍ବର ଚିତ୍ର ଦେଖ ।



ଫିତାଟି ଯେତେ ଲମ୍ବା କରିବାକୁ ଇଚ୍ଛା କରିବ, ଝାଣୀକୁ ତହିଁରୁ କିଛି ଅଧିକ ଲମ୍ବା ରଖିବା ଆବଶ୍ୟକ ।

୫ ନମ୍ବର ଚିତ୍ର

ଫିତାର ଝାଣୀରେ ଖିଅଗୁଡ଼ିକ ଖୁବ୍ ନିକଟ ନିକଟରେ ରହିବା ଆବଶ୍ୟକ । ପ୍ରତି ଇଞ୍ଚରେ ପ୍ରାୟ ୨୪।୨୫ ଗୋଟି ଖିଅ ରଖାଯାଏ । ସୂତା ସରୁ ହେଲେ ଖିଅର ସଂଖ୍ୟା ଆହୁରି ଅଧିକ ହେବ ।

ଫିତାରେ ଝାଣୀ ସୂତାଦ୍ୱାରା ଭରଣୀ ସୂତା ଢାଙ୍କି ହୋଇଯାଏ । ତେଣୁ ଝାଣୀ ସୂତା ଭରଣୀ ସୂତା ଅପେକ୍ଷା ମୋଟା ହେବ । ଝାଣୀ ନିମନ୍ତେ ୫।୬ ଖିଅ ସୂତା ଏକାଠି ବଳା ଯାଇଥିଲେ ଭରଣୀ ନିମନ୍ତେ ୨।୩ ଖିଅ ସୂତା ବଳିବାକୁ ହେବ । ସତରଞ୍ଜି ବୁଣିବା ନିମନ୍ତେ ଭରଣୀ ସୂତା

ବଳାଯାଏ ନାହିଁ । ମାତ୍ର ଫିତା ବୁଣିବା ନିମନ୍ତେ ଭରଣୀ ସୂତା ଯେତେ ଖିଅର କରିବ, ତାହାକୁ ବଳିବାକୁ ପଡ଼ିବ ।

**ଟାଣୀ**—ଟାଣୀକୁ ଯେତେ ଲମ୍ବା କରିବ ସେହି ଅନୁସାରେ ମାପ କରି ଦୁଇଗୋଟି ଖୁଣ୍ଟ ପୋତିବ । ପ୍ରତି ଖୁଣ୍ଟ-ଠାରୁ ଭିତରଆଡ଼କୁ ୧½ ଫୁଟ ବା ୨ ଫୁଟ ଅନ୍ତରରେ ଆଉ ଦୁଇ ଗୋଟି ଛୋଟ ଖୁଣ୍ଟି ପୋତିବ । ଟାଣୀ ସୂତାକୁ ପାର୍ଶ୍ୱର ଚିତ୍ର ପରି ସେହି ଖୁଣ୍ଟ-ଗୁଡ଼ିକରେ ବୁଲାଇ ବୁଲାଇ ଆଣି ଫିତାର

୬ ନମ୍ବର ଚିତ୍ର

ଟାଣୀ ପ୍ରସ୍ତୁତ କରିବାକୁ ହେବ । ୬ ନମ୍ବର ଚିତ୍ର ଦେଖ । ସୂତା ବୁଲାଇବାବେଳେ ସୂତାକୁ ପ୍ରତି ବଡ଼ ଖୁଣ୍ଟିରେ ବୁଲାଇ ଆଣି ତାହାକୁ ତହିଁ ପାଖର ସାନ ଖୁଣ୍ଟିର ବାମ ପାର୍ଶ୍ୱରେ ଥରେ ଓ ଡାହାଣ ପାଖରେ ଥରେ ଏହି କ୍ରମରେ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ବୁଲାଇ ନେଲେ ଦୁଇ ମୁଣ୍ଡରେ ବଡ଼ ଖୁଣ୍ଟି ଓ ସାନ ଖୁଣ୍ଟି ମଝିରେ ଗୋଟିଏ ଗୋଟିଏ ଛକ ପଡ଼ିଯିବ । ୭ ନମ୍ବର ଚିତ୍ର ଦେଖ ଟାଣୀ ନିମନ୍ତେ ଯେତେ ସୂତା ବୁଲାଇବା ଆବଶ୍ୟକ, ତାହା ବୁଲାଇ ସାରିଲେ ଛକ ଦୁଇଟିକୁ ଦୁଇଖଣ୍ଡି ଡୋରିଦ୍ୱାରା ବାନ୍ଧି ଟାଣୀକୁ ଖୁଣ୍ଟମାନଙ୍କରୁ କାଢ଼ି ଆଣିବ ଏବଂ ଏକ ପ୍ରାନ୍ତରୁ ତାହାକୁ ୮ ନମ୍ବର ଚିତ୍ର ପରି ଖଣ୍ଡିଏ କାଠିରେ ଗୁଡ଼ାଇ ରଖିବ ।





୭ ନମ୍ବର ଚିତ୍ର



୮ ନମ୍ବର ଚିତ୍ର

ଲୁଗା, ସତରଞ୍ଜି, ଫିତା ପ୍ରଭୃତି ଯେତେ ପ୍ରକାର ପଦାର୍ଥ ବୁଣାଯାଏ, ତାହାଁର ଟାଣୀ କରିବାର ପ୍ରଣାଳୀ ସବୁଥିରେ ପ୍ରାୟ ସମାନ । ଅଧିକ ଚଉଡ଼ାର ପଦାର୍ଥ ନିମନ୍ତେ ଅଧିକ ଚଉଡ଼ାର ଟାଣୀ କରାଯାଏ ଏବଂ କମ୍ ଚଉଡ଼ାର ପଦାର୍ଥ ନିମନ୍ତେ କମ୍ ଚଉଡ଼ାର ଟାଣୀ କରାଯାଏ ।

ଅଳ୍ପ ସ୍ଥାନ ମଧ୍ୟରେ ଅଧିକ ଲମ୍ବ ଟାଣୀ ପ୍ରସ୍ତୁତ କରିବାକୁ ହେଲେ କେବଳ କେତେଗୁଡ଼ିଏ ଖୁଣ୍ଟି ବସାଇ ସେହି ଖୁଣ୍ଟି ଗୁଡ଼ିକରେ ସୂତାକୁ ବୁଲାଇ ବୁଲାଇ ଅଧିକ ଲମ୍ବାର ଟାଣୀ ପ୍ରସ୍ତୁତ କରିବାର ପ୍ରଣାଳୀ ଏହା ପରେ ବର୍ଣ୍ଣିତ ହେବ ।

ଫିତା ବା ନେୱାର ବୁଣିବା ପାଇଁ ଦୁଇଗୋଟି ଖୁଣ୍ଟ ପୋତି ଅଥବା ଘରର ଯେ କୌଣସି ଦୁଇଗୋଟି ଖୁଣ୍ଟ ମଧ୍ୟରେ ଯେତେ ସ୍ଥାନ ଥିବ, ସେହି ଅନୁସାରେ ଲମ୍ବା ରଜ୍ଜୁ ଟାଣୀର ଏକ ମୁଣ୍ଡର ଫାଳ ମଧ୍ୟରେ ଖଣ୍ଡିଏ କାଠି ଦେଇ ସେହି କାଠି ଖଣ୍ଡିକର ଦୁଇ ପ୍ରାନ୍ତରେ ଦୁଇଗୋଟି ଡୋର ଲଗାଇ ଡୋର ଦୁଇଟିକୁ ପୁନଶ୍ଚ ଏକତ୍ର କରି ତାହା ଗୋଟିଏ ଖୁଣ୍ଟରେ ବାନ୍ଧିଦେବ ଏବଂ ଅବଶିଷ୍ଟ ଅଂଶକୁ ଅନ୍ୟ ଖୁଣ୍ଟରେ ଗୁଡ଼ାଇ ଅଟକାଇ ଦେବ । ୯ନମ୍ବର ଚିତ୍ର ଦେଖ ।



୯ ନମ୍ବର ଚିତ୍ର

ଝାଣୀର ସୁତାଗୁଡ଼ିକ ବଜାଡ଼ ତହିଁରେ ଥିବା ଫାନ୍ଦ ବା ଛକଟିର ଦୁଇ ପାଖର ଦୁଇଫାଙ୍କ ମଧ୍ୟରେ ଦୁଇଖଣ୍ଡି ଛୋଟ ଛୋଟ ବତା ଲଗାଇଦେବ ଏବଂ ବଅ ବାନ୍ଧିନେବ ।

ବଅ ବାନ୍ଧିବା ନିମନ୍ତେ ଝାଣୀ ସୂତାର ଦୁଇଗୁଣ ମୋଟର ଗୋଟିଏ ସୂତାର ଡୋର ବଳି ତାହା ବଅ ନିମନ୍ତେ ପ୍ରସ୍ତୁତ କରିବ । ବତାଦ୍ୱାରା ଯେଉଁ ଫାଙ୍କ ହୋଇଅଛି, ଗୋଟିଏ ଫାଙ୍କ ମଧ୍ୟରେ ଡାହାଣରୁ ବାମଆଡ଼କୁ ବଅ ସୂତାର ଏକ ପ୍ରାନ୍ତ ପୂରାଇଦେବ ଏବଂ ସେହି ସୂତାରେ ଗୋଟିଏ ଫାଶ ଢିଲା କରି କରି ଫାଶଟି ଖଣ୍ଡିଏ କାଠିର ଅଗରେ ଚଢ଼ାଇଦେବ । ଏହି କାଠିକୁ ବଅ କାଠି କହନ୍ତି । ବଅ କାଠିଖଣ୍ଡିକୁ ବାମ ହାତରେ ଧରିବ । ପ୍ରତି ଝାଣୀସୁତାର ଖିଅ ମଧ୍ୟରେ ଦେଖାଯାଉଥିବା ବଅ ସୂତାକୁ ପ୍ରତିଥର ଡାହାଣ ହାତର ବଶିଅଙ୍ଗୁଳିଦ୍ୱାରା ଉଠାଇନେଇ ବଅ କାଠିରେ ଚଢ଼ାଇ ଦେଉଥିବ । ବାମ ଦଗରୁ ଆରମ୍ଭ କରି ଯେତେ ବଅସୂତା ସେହି କାଠି ଉପରେ ଚଢ଼ାଉଥିବ, ସେହି ବଅ କାଠିଟିକୁ ତେତେ ଡାହାଣଆଡ଼କୁ ଚଳାଇ ଦେଉଥିବ । ଶେଷ ପର୍ଯ୍ୟନ୍ତ ଆସିଲେ ବଅ କାଠିର ମୁଣ୍ଡରେ ଗଣ୍ଠି ଦେଇ ଶେଷ କରିବ ।

ଝାଣୀର ଗୋଟିଏ ସୂତାରୁ ଏହି ବଅଟି ହୋଇଗଲା । ଠିକ୍ ସେହି ପ୍ରଣାଳୀରେ ଅନ୍ୟ ବତାଖଣ୍ଡିକଦ୍ୱାରା ହୋଇଥିବା ଫାଙ୍କ ମଧ୍ୟରେ ଆଉ ଖଣ୍ଡିଏ ବଅସୂତା ପୂରାଇ ଅବଶିଷ୍ଟ ଖିଅଗୁଡ଼ିକରୁ ଆଉ ଗୋଟିଏ ବଅ ବାନ୍ଧିନେବ ।

ବର୍ତ୍ତମାନ ଝାଣୀଟିକୁ ଯେଉଁ ଖୁଣ୍ଟରେ ଗୁଡ଼ାଇଥିଲ, ସେହି ଖୁଣ୍ଟରୁ ଫିଟାଇ ତାହାକୁ ଓଲଟାଇ ପୁନଶ୍ଚ ପୂର୍ବପରି ସେହି ଖୁଣ୍ଟରେ ବାନ୍ଧିଦେବ । ତାହା ହେଲେ ବନ୍ଧା ହୋଇଥିବା ବଅକାଠି ଦୁଇଟି ତଳକୁ ଝୁଲିପଡ଼ିବ ।



୧୦ ନମ୍ବର ଚିହ୍ନ

ପୁନଶ୍ଚ ପୂର୍ବପରି ଝାଣୀର ଖିଅଗୁଡ଼ିକରୁ ଆଉ ଦୁଇଗୋଟି ବଅ ଉପରେ ବାନ୍ଧିନେବ । ଏହି ୨ୟ ଥର ବଅ ବାନ୍ଧିବାବେଳେ ଦେଖିବାକୁ ହେବ, ଯେପରି ଏହାର ପ୍ରତି ଖିଅ ଝାଣୀ ସୂତାର ପ୍ରତି ଖିଅକୁ ଧରି ସେହି ଖିଅର ନିମ୍ନକୁ ଝୁଲୁଥିବା ବଅରେ ଛନ୍ଦ ହୋଇ ଉପରକୁ ଉଠୁଥିବ । ୧୦ ନମ୍ବର ଚିହ୍ନ ଦେଖ । ଏଥିପାଇଁ ବଅ ଡୋରକୁ ତଳ ବଅର ଫେର ମଧ୍ୟରେ ଡାହାଣରୁ ବାମକୁ ପୂରାଇବାକୁ ହେବ ।

ଉପରର ଦୁଇ ବଅକାଠିର ଉଭୟ ପ୍ରାନ୍ତରେ ଖଣ୍ଡିଏ ଖଣ୍ଡିଏ ଡୋର ବାନ୍ଧି ତାହାକୁ ଏକାଠି ଯୋଡ଼ି ଦେବ । ପୁଣି ସେହି ଡୋରରୁ ଆଉ ଦୁଇ ଖଣ୍ଡି ଡୋର ନେଇ ଉପରେ ଗୋଟିଏ କାଠିର ଦୁଇ ପ୍ରାନ୍ତରେ ବାନ୍ଧିଦେବ । ୧୧ ନମ୍ବର ଚିତ୍ରଦେଖ ।

ସେହିପରି ନମ୍ବର ଦୁଇ ବଅକାଠିରୁ ଦୁଇଖଣ୍ଡି ଡୋର ନେଇ ମାଡ଼ ଡାଙ୍ଗ ବା ଟିପଣୀ ଦୁଇ ଖଣ୍ଡିର ଅଗ୍ରଭାଗରେ ବାନ୍ଧିଦେବ । ଚିତ୍ରଦେଖ ।

ମାଡ଼ ଡାଙ୍ଗ ଦୁଇଟିର ଅପର ପ୍ରାନ୍ତ ଦୁଇଟିରେ ଖଣ୍ଡିଏ ଖଣ୍ଡିଏ ଛୋଟ ଡୋର ବାନ୍ଧି ଡୋର ଦୁଇଟିକୁ ଏକ ସ୍ଥାନରେ ଖଣ୍ଡିଏ ଖୁଣ୍ଟିରେ ବାନ୍ଧିଦେବ । ଯେବେ ଗୋଟିଏ ଖିଲଦ୍ୱାରା ଖୁଣ୍ଟିରେ ସଂଯୁକ୍ତ ଥାଏ ତେବେ ଅଉ ଡୋର ବାନ୍ଧିବାକୁ ପଡ଼ିବ ନାହିଁ ।

ବୁଣିବା ସମୟରେ ଗୋଟିଏ ଷ୍ଟୁଲ ଉପରେ ବସି ଦୁଇ ମାଡ଼ ଡାଙ୍ଗି ଉପରେ ଦୁଇ ଗୋଡ଼ ରଖିବ । ଗୋଟିଏ ଗୋଡ଼ତଳକୁ ମାଡ଼ିଦେଲେ ଗୋଟିଏ ଫାନ୍ଦ ଉଠିବ । ଖଣ୍ଡିଏ ଛୋଟ କଣ୍ଡା



୧୧ ନମ୍ବର ଚିତ୍ର

କାଠିରେ ଭରଣୀ ସୂତାକୁ ଆଗରୁ ଗୁଡ଼ାଇ ରଖିଥିବ । ତାହା ପରେ ସେହି ଫାନ୍ଦ ମଧ୍ୟରେ ପୂରାଇ ଦେଇ ସୂତାଟି ବସାଇ ଦେବ ଏବଂ ପିଠଣାଦ୍ୱାରା ତାହାକୁ ପିଟିଦେବ । ବର୍ତ୍ତମାନ ଅନ୍ୟ ଗୋଡ଼ଟି ଟିପିଦେଲେ ଆଉ ଗୋଟିଏ ଫାନ୍ଦ ଉଠିବ । ଏତେବେଳେ ଆଉଥରେ ପିଠଣାଦ୍ୱାରା ପିଟି ତତ୍ପରେ ଆଉଥରେ କଣ୍ଡାକାଠି ତନ୍ମଧ୍ୟରେ ଫେରାଇ ଆଣି ବୁଣି ପିଠଣାଦ୍ୱାରା ପିଟିଦେବ ।

ଏହିପରି ପ୍ରତିଥର ଫାନ୍ଦ ଉଠାଇ ଥରକୁଥର ବୁଣି ପିଠଣାଦ୍ୱାରା ପିଟି ବରାବର ବୁଣିଯିବ ।

---

## ଝୁମ୍ପା (Fringes)

ଚଉକିଦାର, କନେଷ୍ଟବଲ୍ ପ୍ରଭୃତିଙ୍କଠାରୁ ଆରମ୍ଭ କରି ବଡ଼ ବଡ଼ ପୁଲିସ କର୍ମଚାରୀ-ମାନଙ୍କର ପଗଡ଼ିର ଏକପ୍ରାନ୍ତରେ ଯେଉଁ ଝୁମ୍ପା ଲାଗିଥାଏ, ତାହାକୁ ଫ୍ରିଞ୍ଜେସ କହନ୍ତି । ଯେଉଁ ସୂତାଦ୍ୱାରା ଫ୍ରିଞ୍ଜେସ ବୁଣିବ, ସେହି ସୂତାର ତିନିଗୋଟି ଖିଅ ବା ଚାରିଗୋଟି ଖିଅକୁ ଏକତ୍ର ବଳି ତଦ୍ୱାରା ଟାଣୀ ପ୍ରସ୍ତୁତ କରିବ । ଏହି ଟାଣୀ ଅଧଇଞ୍ଚ ଚଉଡ଼ାର ହେଲେ ଯଥେଷ୍ଟ ହେବ ।

ଭରଣୀ ନିମନ୍ତେ ସେହିପରି ତିନିଗୋଟି ଖିଅ ବା ଚାରିଗୋଟି ଖିଅ ସୂତାକୁ ଏକତ୍ର କରି ତାହାକୁ ଏପରି ବଳ ପାକଲ କରି ଦେଇଥିବ, ଯେପରି ତାହାକୁ କାଟିତ୍ ଛାଡ଼ିଦେଲେ ତାହାକୁଆପେ ଦୁଇ ପରସ୍ତ ହୋଇ ଏକାଠି ମିଶି ମୋଡ଼ହୋଇ ଆପେ ବଳ ହୋଇଯିବ ।

ଫିତା ବା ନେବାର ବୁଣିବା କାରଣ ଟାଣୀ କରିବା, ବଅ ବାନ୍ଧିବା, ଉପରେ ଖଞ୍ଜି ଟାଙ୍ଗିବା, ମାଡ଼ରେ ବାନ୍ଧିବା ଆଦି ଯେପରି ବର୍ଣ୍ଣିତ ହୋଇଅଛି, ଠିକ୍ ସେହିପରି ଏଥିରେ ସମସ୍ତ କରିବାକୁ ହେବ । ତାହାଛଡ଼ା ଟାଣୀର ଦକ୍ଷିଣ ପାର୍ଶ୍ୱରେ ଆଉ ଗୋଟିଏ ସିଧା ଓ ଶକ୍ତ କାଠି ଟାଣୀଠାରୁ ୨୪ ଇଞ୍ଚ ଦୂରରେ କୌଣସି ପ୍ରକାରେ ଟାଣୀ ସଙ୍ଗେ ସମାନ୍ତରାଳ କରି ଖଞ୍ଜି ରଖିବାକୁ ହେବ । ସରୁ ଲୁହାଗଣ୍ଡ ଖଣ୍ଡିଏ ଦେଲେ ଉତ୍ତମ ହେବ ।



୧ ନମ୍ବର ଚିତ୍ର

ବୁଣିବା ସମୟରେ ଥରେ ଗୋଟିଏ ଟିପଣୀକୁ ଟିପି ଦେଲେ ଯେଉଁ ଫାନ୍ଦ ଉଠିବ ତନ୍ମଧ୍ୟରେ ଭରଣୀ ସୂତାକୁ ଥରେ ବୁଣି ସେହି ଭରଣୀ ସୂତାକୁ ଦକ୍ଷିଣ ପାର୍ଶ୍ୱର କାଠି ଉପରେ ଥରେ



୨ ନମ୍ବର ଚିତ୍ର

ବୁଲାଇ ଘେରାଇ ଆଣି ତାହାକୁ ଟାଣୀର ସେହି ଫାନ୍ଦ ମଧ୍ୟରେ ନେଇ ବାମକୁ ବାହାର କରିନେବ ଏବଂ ହାତଦ୍ୱାରା ଉତ୍ତମରୂପେ ପିଟିଦେବ । ତପୂରେ ଅନ୍ୟ ଟିପଣୀଟି ଟିପିଦେଲେ ଆଉ ଗୋଟିଏ ଫାନ୍ଦ ଉଠିଯିବ । ତହିଁରେ ଭରଣୀସୂତାକୁ ଠିକ୍ ପୂର୍ବପରି ବୁଣି ଦକ୍ଷିଣ ପାର୍ଶ୍ୱର କାଠି ଉପରେ ବୁଲାଇ ନେଇ ସେହି ଫାନ୍ଦ ମଧ୍ୟରେ ଫେରାଇ ଆଣି ବାମକୁ ବାହାର କରିଦେବ ଏବଂ ହାତଦ୍ୱାରା ଉତ୍ତମରୂପେ ପିଟିଦେବ ।



ଏହିପରି କ୍ରମାଗତ ବୁଣି ଯେତେ ଲମ୍ବା କରିବାର ଆବଶ୍ୟକ, ତେତେ ଲମ୍ବା ହେବା ପର୍ଯ୍ୟନ୍ତ ବୁଣିଯିବ । ବୁଣିବା ସମୟରେ କାଠିଟି ପୂର୍ଣ୍ଣ ହୋଇଗଲେ ତହିଁରୁ ଯେଉଁ ଅଂଶ ଅଧିକ ହୋଇ ବାହାରି ଯାଉଥିବ, ତାହା ଆପେ ଆପେ ବଳି ହୋଇ ଯାଉଥିବ ଅଥବା ହାତଦ୍ୱାରା ତାହାକୁ ଧରି ବଳି ଦେଉଥିବ ।

ଏହି ଝୁମ୍ପା ବୁଣି ବାହାର କରି ନେଲା ପରେ ଯେଉଁ ପଟଡ଼ରେ ଯେତେ ଲାଗିବ ସେହି ଅନୁସାରେ ପଗଡ଼ି କନାଟିର ଓସାରିଆ ମାପରେ ଖଣ୍ଡେ ଖଣ୍ଡେ କାଟି ନେଇ ତାହାକୁ ପଗଡ଼ି କନାର ଅଗରେ ସିଲାଇ କରି ଲଗାଇଦେବ ।

---

## ସତରଞ୍ଜି ଓ ଗାଲିଚା

ସତରଞ୍ଜି ଓ ଗାଲିଚାର ବହୁଳ ବ୍ୟବହାର ଅଛି । ଏହା ବୁଣିବା ଖୁବ୍ ସହଜ । ଅଳ୍ପ ସମୟ ମଧ୍ୟରେ ଏହା ଜଣେ ଶିକ୍ଷା କରି ପାରିବ ଓ ଆପଣା ଘରେ ବସି ବୁଣି ପାରିବ । ସ୍କୁଲର ବାଳକ ବାଳିକା ଓ ଭଦ୍ର ମହିଳାମାନେ ଅବସର ସମୟରେ ସତରଞ୍ଜି ବା ଗାଲିଚାର ଆସନ ବୁଣି ପାରିବେ । ଖଣ୍ଡିଏ ଖଣ୍ଡିଏ ଛୋଟଫ୍ରେମରେ ଲଗାଇ ବୁଣିବା ସମସ୍ତଙ୍କ ପକ୍ଷରେ ସୁବିଧାଜନକ ହେବ, ତେଣୁ ସେହି ଫ୍ରେମ ଉପରେ ସତରଞ୍ଜି ବୁଣିବାର ପ୍ରଣାଳୀ ଏଠାରେ ଦିଆଗଲା :—

୨ ଇଞ୍ଚ ବା ୨½ ଇଞ୍ଚ ଚଉଡ଼ାର, ୧ ଇଞ୍ଚ ମୋଟାର ୪ ଖଣ୍ଡି ପଟାଦ୍ୱାରା ପାର୍ଶ୍ୱର ୧ ନମ୍ବର ଚିତ୍ରପରି ଖଣ୍ଡିଏ ଫରମା ପ୍ରସ୍ତୁତ କରିବ । ଫରମା ଖଣ୍ଡିକର ଚଉଡ଼ା ଯେବେ ୨ ଫୁଟ କର, ତେବେ ଲମ୍ବା ୩ ଫୁଟ କରିବ । ରେନ୍ଦାଦ୍ୱାରା ଉପରର ଓ ତଳର ପଟା ଦୁଇ ଖଣ୍ଡିର ବାହାର ପାଖର ଅଁଶ ମାରି ଦେଇ ତାହାକୁ କିଞ୍ଚିତ୍ ଗୋଲ କରିଦେବ ।



୧ ନମ୍ବର ଚିତ୍ର

ଏହି ଫରମାରେ ୨୨ ଇଞ୍ଚ ଚଉଡ଼ାର ଏବଂ ୨୬ ଇଞ୍ଚ ଲମ୍ବାର ଦୁଇଖଣ୍ଡି ଆସନ ସହଜରେ ଦୁଇ ପାଖରେ ବୁଣାଯାଇ ପାରିବ । ତହିଁରୁ ଅଧିକ ଲମ୍ବା ଏବଂ ଅଧିକ ଚଉଡ଼ାର ପଦାର୍ଥ କରିବାକୁ ହେଲେ ଫରମା ଖଣ୍ଡିକର ଲମ୍ବା ଓ ଚଉଡ଼ା ବଢ଼ାଇବାକୁ ପଡ଼ିବ । ଯେବେ ଦୁଇଖଣ୍ଡ ମିଶାଇ ଏକଖଣ୍ଡ ଛୋଟ ସତରଞ୍ଜି କରିବାକୁ ଇଚ୍ଛାକରିବ କିମ୍ବା କ୍ୟାନଭାସ୍ ଚଉକିରେ ଲଗାଇବାପାଇଁ କିମ୍ବା ଆରାମ ଚଉକି ଉପରେ ପକାଇବାଭଳି ଛୋଟ ସତରଞ୍ଜି ଖଣ୍ଡିଏ ଖଣ୍ଡିଏ କରିବାକୁ ଇଚ୍ଛା କରିବ, ତେବେ ଏହି ଫରମାରେ ଅକ୍ଲେଶରେ ତାହା ବୁଣି ପାରିବ । ଏପରି ବୁଣିବାକୁ ହେଲେ ଏକ ପାଖର ବୁଣା ଶେଷ ହୋଇଗଲେ କେବଳ ଟାଣୀ ସୂତାକୁ ଫରମାରେ ଚଳାଇ ବୁଣାପାଖ କ୍ରମେ କ୍ରମେ ଅନ୍ୟ ପାଖକୁ ଘୁଞ୍ଚାଇ ଦେବାକୁ ପଡ଼ିବ ।

ଫରମାରେ ସତରଞ୍ଜି ଓ ଗାଲିଚା ବୁଣିବାପାଇଁ ଫରମା ଛଡ଼ା ଅନ୍ୟ ଉପକରଣମାନଙ୍କ ମଧ୍ୟରେ ନିମ୍ନଲିଖିତ କେତେଗୋଟି ପଦାର୍ଥ ବିଶେଷ ଆବଶ୍ୟକ ହେବ ।

୧ । ଖଣ୍ଡିଏ ପଞ୍ଝା—ଏହା ସମ୍ପୂର୍ଣ୍ଣ ଲୁହାର ହେଲେ ଉତ୍ତମ । କାଠର ହତା ଖଣ୍ଡିକରେ ଲୁହା ପାତ କେତେକ-ଖଣ୍ଡ କାଟି ଖଞ୍ଜିଦେଲେ ମଧ୍ୟ ଚଳିବ । ୨ ନମ୍ବର ଚିତ୍ରର ତଳଟି ଲୁହାର ପଞ୍ଝା ଏବଂ ଉପରଟି ଏହିପରି କାଠ ହତାରେ ଲୁହାପାତ ଖଞ୍ଜାଯାଇଛି ।







୨ ନମ୍ବର ଚିତ୍ର

୨ । ଖଣ୍ଡିଏ ଗୃପୁଆଣି ପଟା ଦୁଇ ଇଞ୍ଚ ଚଉଡ଼ାର ଖଣ୍ଡେ କାଗସିକ ପଟାକୁ ଦୁଇପାଖ ରନ୍ଦା ମାରି କାଠଖଣ୍ଡା ପରି କରିଦେଲେ ଚଳିବ । ଏହାର ଲମ୍ବା ଫରମାର ଚଉଡ଼ାଠାରୁ

୬ ଇଞ୍ଚ ଅଧିକ ହେବା ଆବଶ୍ୟକ । ବାଉଁଶ ବତାରେ ମଧ୍ୟ ଏହା କରାଯାଇ ପାରେ । ତନ୍ତୀମାନେ ତନ୍ତରେ ଏହିପରି ପଟା ବ୍ୟବହାର କରନ୍ତି । ସେମାନେ ତାହାକୁ ଠଅଙ୍କ କହନ୍ତି । ତାହା ଲମ୍ବରେ ଏହାଠାରୁ କିଛି ବଡ଼ ଥାଏ ।

୩ । ବଅଡାଙ୍ଗି — ଏହା ଖଣ୍ଡିଏ କାଠର ସରୁ ଗୋଲ ରୁଲ ବା ସରୁ ବାଉଁଶ ହେଲେ ଚଳିବ । ବାଉଁଶ ଖଣ୍ଡିକ ସର୍ବାଙ୍ଗସମାନ ମୋଟା ହେବା ଆବଶ୍ୟକ । ଏହାର ଲମ୍ବା ଫରମାର ଚଉଡ଼ାଠାରୁ ୩।୦ ଇଞ୍ଚ ବଡ଼ ହେଲେ ଚଳିବ ।



୪ ନମ୍ବର ଚିତ୍ର

୪ । ଯୁଅକାଠି—ଏକଖଣ୍ଡ ପ୍ରାୟ ଏକ ଇଞ୍ଚ ବା ୧୳ ଇଞ୍ଚ ଚଉଡ଼ା ଓ ଅଧଇଞ୍ଚ ବା ଛନପା ମୋଟ ପଟାକୁ ରନ୍ଦା ମାରି ଗୁପୁଆଣି ପରି କରିବ । ଏହା ବାଉଁଶର ବତାରେ ମଧ୍ୟ କରାଯାଇ ପାରେ । ଏହା ଫରମାଠାରୁ ଇଦୁ ଛନ ଇଞ୍ଚ ଅଧିକ ଲମ୍ବ ହେବା ଆବଶ୍ୟକ ।

୫ । ଟିପାପଟା—ଏହା ଖଣ୍ଡିଏ ବତା ହେଲେ ଚଳିବ । ଏହାର ଲମ୍ବା ଫରମା ଚଉଡ଼ା ସଙ୍ଗେ ସମାନ ହେବା ଆବଶ୍ୟକ ।

୬ । କଣ୍ଡାକାଠି—ଖଣ୍ଡେ ବତାକୁ ଚାଞ୍ଛି ତାହାର ଦୁଇ ମୁଣ୍ଡରେ କେନା କରିଦେଲେ ଚଳିବ । ଏହା ଫରମା ଚଉଡ଼ାଠାରୁ ଦୁଇ ଇଞ୍ଚ ବଡ଼ ହେବା ଆବଶ୍ୟକ ।

## ସତରଞ୍ଜି ନିମନ୍ତେ ସୂତା

ସତରଞ୍ଜିଟି ସରୁ ଓ ଚିକ୍କଣ କରିବାକୁ ଇଚ୍ଛା କଲେ ସରୁ ସୂତା ବ୍ୟବହାର କରିବାକୁ ହେବ । ସାଧାରଣ ମୋଟା ଜିନିଷ ନିମନ୍ତେ ମୋଟ ସୂତା ଆବଶ୍ୟକ ।

ସତରଞ୍ଜି ଆସନ ନିମନ୍ତେ ଟାଣୀ ସୂତା ଭରଣୀ ସୂତା ଅପେକ୍ଷା ସରୁ ଅର୍ଥାତ୍ ଅଧିକ ନମ୍ବରର ହେବା ଉଚିତ । ସମାନ ନମ୍ବରର ହେଲେ କ୍ଷତି ନାହିଁ । ଖଣ୍ଡିଏ ସାଧାରଣ ମୋଟା ଖାପରି ସତରଞ୍ଜି ଆସନ କରିବାକୁ ହେଲେ ତାହାର ଟାଣୀ କରିବା ପାଇଁ ୮ ନମ୍ବର ସୂତା ନେଇ ତାହାକୁ



୪ ନମ୍ବର ଚିତ୍ର

ଗୃହିଣୀଅ କରି ବାଣ ପକାଇବ । ଭରଣୀ ନିମନ୍ତେ ୬ ନମ୍ବର କମ୍ବା ୬୪ ନମ୍ବର ସୂତା ନେଇ ତା'ହାକୁ ୬ ଖିଅ କରିବ । ସତରଞ୍ଜି ପାଇଁ ଭରଣୀ ସୂତା ବଳିବାର ଆବଶ୍ୟକ ହୁଏ ନାହିଁ । କେବଳ ଏହାକୁ ବୁଣିବା ପୂର୍ବେ କଣ୍ଡାକାଠିରେ ଲମ୍ବା ଭାବରେ ଗୁଡ଼ା'ଇ ରଖୁଥିବ ।

ଟାଣୀ ସୂତା'କୁ ପ୍ରସ୍ତୁତ କରିସାରି ଫରମାର ଗୃହପାଖରେ ୪ ନମ୍ବର ଚିତ୍ର ପରି ଲମ୍ବବାଗରେ ବରାବର ଗୁଡ଼ାଇ ଦେବ । ସୂତାଗୁଡ଼ିକ ୧ ଇଞ୍ଚ ପରିମିତ ସ୍ଥାନରେ ସମାନ ଅନ୍ତରରେ ୮ ଗୋଟି କରି ଖିଅ ରଖି ସବୁ ଗୁଡ଼ିକ ସମାନଭାବରେ ସଜାଡ଼ି ଦେବ । ଦୁଇପାଖରେ ଦୁଇଟି ଧଡ଼ି କରିବା ପାଇଁ ଦୁଇଖଣ୍ଡି ମୋଟା ଡୋରି ଖଞ୍ଜି ଦେବ ।

ଏଥର ଫରମାଟିର ଏକ ପାଖର ସୂତାଗୁଡ଼ିକ ମଧ୍ୟରୁ ଗୋଟିଏ ସୂତା ଉପରକୁ ଏବଂ ଅନ୍ୟ ଗୋଟିଏ ସୂତା ତଳକୁ କ୍ରମାନ୍ୱୟରେ ରଖି ସମସ୍ତ ସୂତା-ଗୁଡ଼ିକୁ ଭାଗ କରି ତନ୍ମଧ୍ୟରେ ଯୁଅକାଠି ଖଣ୍ଡିଏ ପୁରାଇ ଦେବ ଏବଂ ତାକୁ ଉପରକୁ ଉଠାଇ ଦେବ । ଏହି ଯୁଅକାଠି ତଳକୁ ଆଉ ଥରେ ସୂତାଗୁଡ଼ିକୁ ଭାଗ କରିବ । ଯେଉଁ ସୂତାଗୁଡ଼ିକ ତଳକୁ ଥିବ ତାହାକୁ ଉପରକୁ ଉଠାଇବ ଏବଂ ଯେଉଁ ସୂତାଗୁଡ଼ିକ ଉପରେ ଥିବ ତାହାକୁ ତଳକୁ ଦେଇ ତନ୍ମଧ୍ୟରେ ଗୃହପୁଅଣି ପଟା ବା ଖଣ୍ଡିଏ ବଉଁଶ ପୁରାଇ ଦେବ ।



୫ ନମ୍ବର ଚିତ୍ର

ଏଥର ବଅ ବାନ୍ଧିବା ନିମନ୍ତେ ଗୋଟିଏ ଡୋର ପ୍ରସ୍ତୁତ କରିବ । ଏହି ଡୋରଟି ବଅଠାରୁ ଦୁଇ ଗୁଣ ମୋଟ ହେଲେ ଚଳିବ । ସେହି ଡୋରଟିକୁ ପ୍ରସ୍ତୁତ କରିବାପାଇଁ ୮ନମ୍ବର ସୂତା ୮ଖିଅ ନେଇ ତାହାକୁ ଉତ୍ତମରୂପେ ବଳି ପାକଲ କରି ରଖିବ । ଉପରି ଲିଖିତ ଗୁମ୍ଫୁଆଣି ପଟାଦ୍ୱାରା ଟାଣୀ ସୂତାକୁ ଭାଗ କରିବାରେ ଯେଉଁ ଫାଙ୍କ ହୋଇଥିବ, ସେହି ଫାଙ୍କ ମଧ୍ୟରେ ଏହି ଡୋରଟିକୁ ଡାହାଣରୁ ବାମ ଆଡ଼କୁ ପୁରାଇଦେବ । ଡୋରର ମୁଣ୍ଡରେ ଗୋଟିଏ ଫାଶ କରି ଫାଶଟି ବଅ ଡାଙ୍ଗରେ ଚଢ଼ାଇ ଦେବ । ଯେପରି ତାହା ବଅଡାଙ୍ଗ ଉପରେ ହୁଗୁଳା ହୋଇ ରହିବ । ତା ପରେ ବଅଡାଙ୍ଗକୁ ବାମ ହାତରେ ଧରିବ । ଟାଣୀ ସୂତାର ପ୍ରତି ଖିଅର ଫାଙ୍କରେ ଦେଖା ଯାଉଥିବା ବଅଡୋରକୁ ଡାହାଣ ହାତର ବଶି ଅଙ୍ଗୁଳିରେ ଟାଣି ଆଣି ତାହାକୁ ବଅ ଡାଙ୍ଗରେ ଚଢ଼ାଇ ଦେଉଥିବ । ବାମ ଦିଗରୁ ଯେତେ ବଅଡୋରଟି ବଅଡାଙ୍ଗ ଉପରେ ଚଢ଼ାଉଥିବ, ତେତେ ବଅଡାଙ୍ଗକୁ ଡାହାଣ ଆଡ଼କୁ ଟେଲାଇ ଦେଉଥିବ । ସବୁଗୁଡ଼ିକ ଶେଷ ହୋଇଗଲେ ବଅଡାଙ୍ଗରେ ଗଣ୍ଠି ଦେଇ ଶେଷ କରିବ । ଗୁମ୍ଫୁଆଣି ପଟା ଖଣ୍ଡି କାଢ଼ିଦେବ ।

ବୁଣିବା ପୂର୍ବେ ଫରମା ଖଣ୍ଡିକର ତଳପଟା ଉପରେ ଖଣ୍ଡିଏ ସରୁ କାଠି ଦେଇ ଆଉ ଖଣ୍ଡିଏ ସୂତାଦ୍ୱାରା ଟାଣୀର ପ୍ରତିଖିଅକୁ ସେହି କାଠି ସଙ୍ଗେ ଗୁଡ଼ାଇ ଗୁଡ଼ାଇ ଛନ୍ଦି ଦେବ । ତାହାହେଲେ ବୁଣିବାବେଳେ ପିଟିଲେ ସୁଦ୍ଧା ସୂତାଗୁଡ଼ିକ ହଲଚଲ ହେବାର କୌଣସି ଆଶଙ୍କା ନ ଥିବ ।



୬ ନମ୍ବର ଚିତ୍ର

ପ୍ରଥମେ ବଅଡାଙ୍ଗକୁ ବାମ ହାତର ବୁଢ଼ା ଅଙ୍ଗୁଳିରେ ଠେକି ଧରିବ । ଚିପା ପଟା ଖଣ୍ଡିକ ବଅ ଓ ଯୁଅକାଠି ମଝିରେ ଟାଣୀ ଉପରେ ରଖି ବାମ ହାତର ଅନ୍ୟ ଅଙ୍ଗୁଳିମାନଙ୍କ ଦ୍ୱାରା ଚିପି ଧରିବ । ତାହାହେଲେ ଗୋଟିଏ ଫାନ୍ଦ ଉଠିଯିବ । ସେହି ଫାନ୍ଦରେ ଖଣ୍ଡିଏ ବତା ଦେଇ ଆଡ଼ବାଗେ ଧରିଲେ ଫାନ୍ଦଟି ପରିଷ୍କାର ହୋଇ ଦେଖାଯିବ । ସେହି ଫାନ୍ଦରେ କଣ୍ଢାକାଠିକୁ ବାମ ପାଖରୁ ପୁରାଇ ଡାହାଣ ପାଖରେ କାଢ଼ିନେବ ଯେପରି ଏକ ପରସ୍ତ ଭରଣୀ ସୂତା ସେହି ଫାନ୍ଦ ମଧ୍ୟରେ ରହିଯିବ । ସେହି ଭରଣୀ ସୂତାକୁ ଅଙ୍ଗୁଳି ଦ୍ୱାରା ଉଠାଇ ଢିଲା କରି ଦେବ । ବତା ଖଣ୍ଡିକ କାଢିନେଇ ପଞ୍ଝାରେ ଉତ୍ତମରୂପେ ପିଟିଦେବ ।

ତା ପରେ ଟିପାପଟାଟି କାଢ଼ି ରଖି ଯୁଅକାଠିକୁ ଉପରୁ ଟାଣି ଆଣି ତାହାକୁ ଘନ ଭାବରେ ମୋଡ଼ିଦେଲେ ଅଭ ଗୋଟିଏ ଫାନ୍ଦ ସଫା ଦେଖାଯିବ । ସେତେବେଳେ ଡାହାଣ ପାଖରୁ କଣ୍ଡାକାଠିଟି ପୁରାଇ ବାମ ପାଖରେ କାଢ଼ି ନେବ । ତାହାହେଲେ ଦ୍ୱିତୀୟ ଥରକୁ ଭରଣୀ ସୂତା ଏକ ଧାଡ଼ି ଏହି ଫାନ୍ଦ ମଧ୍ୟରେ ରହିଯିବ । କଣ୍ଡାକାଠିଟି ଚଳାଇଦେବା ପୂର୍ବେ ବଗ୍ଧବର କନାର୍ ରେ ଥିବା ଡୋରଟିରେ ଭରଣୀ ସୂତାକୁ ଥରେ ଲେଖାଏଁ ଗୁଡ଼ାଇ ଦେଉଥିବ । ପୂର୍ବଥର ପରି ମଝିରୁ ଜାଗା ଜାଗା ଭରଣୀ ସୂତାକୁ ଉଠାଇ ଦେଇ ଢିଲା କରି ତାପରେ ପଞ୍ଝାରେ ପିଟି ମିଶାଇ ଦେବ । ଏହିପରି ଥରେ ବାମରୁ ଓ ଥରେ ଡାହାଣରୁ କାଣ୍ଡକାଠିଦ୍ୱାରା ବୁଣିଯିବ ।

ଯେବେ ଆସନଖଣ୍ଡିକର ବୃହତ୍ପାଖରେ ଅନ୍ୟ କୌଣସି ରଙ୍ଗର କନାରି ଦେବାକୁ ଇଚ୍ଛା କର, ତେବେ ପ୍ରଥମେ ସ୍ଥିର କରିବ ଯେ, କେତେ ଚଉଡ଼ାର କନାରି ହେବ । ସେହି ଅନୁସାରେ ବୃତ ପାଖରେ ମାପ କରି ଦାଗ ଦେବ । ଯେବେ ଆସନ ଖଣ୍ଡିକର ଦେହ ଲାଲ କରି କନାରି କଳା ରଙ୍ଗରେ ୪ଇଞ୍ଚ ରଖିବାକୁ ଇଚ୍ଛା କରିବ, ତେବେ ସେହି ଅନୁସାରେ ଦୁଇପାଖରୁ ୪ ଇଞ୍ଚ ପର୍ଯ୍ୟନ୍ତ ମାପ କରି ଗୋଟିଏ ଟାଣୀ ସୂତାରେ ଦାଗ ଦେବ । ଆହୁରି ମଧ୍ୟ ଦୁଇପାଖରୁ ଟାଣୀ ସୂତାଗୁଡ଼ିକ ସେହି ପର୍ଯ୍ୟନ୍ତ ଗଣି ଦୁଇପାଖର ସୂତାର ସଂଖ୍ୟା ଠିକ୍ ହେଲା କି ନାହିଁ ଦେଖିବ । ସଂଖ୍ୟା ଠିକ ନ ହେଲେ ସୂତା ବସାଇବାରେ କମ୍‌ବେଶୀ ଛଡ଼ା ହୋଇ ଯାଇଥିବାର ଜାଣିବ । ତାହାକୁ ସଜାଡ଼ି ଠିକ୍ କରି ବସାଇ ଦେବ । ତା ପରେ ଯେ କୌଣସି ରଙ୍ଗର ସୂତାରେ ଦୁଇ ଛକ ଖିଅ ବୁଣି ମୂଳ ଆରମ୍ଭ କରିଦେବ । ଏଥର କଳା ସୂତା ୪ ଇଞ୍ଚପର୍ଯ୍ୟନ୍ତ ବୁଣିଯିବ । ୪ଇଞ୍ଚ ପୂର୍ଣ୍ଣ ହୋଇଗଲେ ଦୁଇ ପାଖର କନାରି କ୍ରମନ୍ତେ ଦୁଇଗୋଟି ଛୋଟ ଛୋଟ କଣ୍ଡାକାଠି ପ୍ରସ୍ତୁତ କରିବ । ଏହି କଣ୍ଡାକାଠି ୪ ଇଞ୍ଚ କରି ଲମ୍ବା ହେଲେ ଚଳିବ । ଏହି କାଠିରେ କଳାରଙ୍ଗର ଭରଣୀ ସୂତା ଗୁଡ଼ାଇବ । ବଡ଼ କଣ୍ଡାକାଠିଟିରେ ଲାଲ ରଙ୍ଗର ଭରଣୀ ସୂତା ଗୁଡ଼ାଇବ । ଗୋଟିଏ ଫାନ୍ଦ ଉଠିଲେ ଦୁଇ ପାଖରେ ୪ ଇଞ୍ଚ ଦାଗ ପର୍ଯ୍ୟନ୍ତ ଦୁଇ ପାଖରୁ କଳାସୂତାର କଣ୍ଡାକାଠି ଦୁଇଟିରେ



୧୨ନମ୍ବର ଚିତ୍ର

ସେହି ୪ ଇଞ୍ଚ ପର୍ଯ୍ୟନ୍ତ ବୁଣି ମଝିରେ ନାଲି ଭରଣୀ ସୂତାର କଣ୍ଡାକାଠିରେ ବୁଣିବ । ପ୍ରତିଥର କଳା ଭରଣୀ ସୂତା କନାସ୍ୱରେ ବୁଣି ଅନ୍ୟ ଥରକୁ ଫେରାଇ ନେବା ଆଗରୁ ମଝିର ନାଲି ସୂତା ସଙ୍ଗେ ଥରେ ଛନ୍ଦି ଦେଇ ତାପରେ କଣ୍ଡାକାଠିଗୁଡ଼ିକ ଫେରାଇ ନେଉଥିବ । ଏହିପରି ଉପରେ କନାସ୍ୱପାଇଁ ଦାଗ ପର୍ଯ୍ୟନ୍ତ ବୁଣି ସାରିଲେ ସାନ କଣ୍ଡାକାଠି ଦୁଇଟିକୁ ଛାଡ଼ିଦେବ । ବଡ଼ କଣ୍ଡା-କାଠିଟିରେ ଏଥର କଳା ଭରଣୀ ସୂତା ଗୁଡ଼ାଇ ପୁଣି ଦୁଇ ପ୍ରାନ୍ତ ପର୍ଯ୍ୟନ୍ତ ଆଉ ୪ ଇଞ୍ଚ ବୁଣିବ । ଶେଷକୁ ମୂଳରେ ଯେଉଁ ସବୁ ସୂତା ବୁଣିଥିବ ସେହି ସୂତା ୨।୩ ଖିଅ ବୁଣି ଶେଷ କରିବ ।

ଆସନଟିର ମଝିରେ ବା କନାସ୍ୱରେ ଯେବେ କୌଣସି ଚିତ୍ର ବୁଣିବାକୁ ଇଚ୍ଛା କରିବ, ତେବେ ଚିତ୍ରଟି ଅଙ୍କନ କରି ସେହି ଅନୁସାରେ ଟାଣୀରେ ଦାଗ ଦେବ । ଯେଉଁଠାରେ ଯେଉଁ ରଙ୍ଗ ଦେବାକୁ ସ୍ଥିର କରିବ ସେହି ସେହି ସ୍ଥାନରେ ସେହି ସେହି ରଙ୍ଗପାଇଁ ଖଣ୍ଡିଏ ଖଣ୍ଡିଏ ଛୋଟ ଛୋଟ କଣ୍ଡାକାଠି ତିଆରି କରି ତହିଁରେ ସେହି ସେହି ରଙ୍ଗର ଭରଣୀସୂତା ଗୁଡ଼ାଇ ତାହାକୁ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ଯେଉଁଠାରେ ଯେଉଁ ରଙ୍ଗ ସେହିଠାରେ ସେହି ରଙ୍ଗର କାଠିଗୁଡ଼ିକ ବୁଣା ସଙ୍ଗେ ସଙ୍ଗେ ଖଞ୍ଜି ଚିତ୍ରର ମାପକୁ ଲକ୍ଷ କରି ଯେଉଁ ରଙ୍ଗ ଯେତେଦୂର ବୁଣିବା ଅବଶ୍ୟକ, ସେହିପରି ବୁଣି ଯେପରି ଚିତ୍ର କରିବାକୁ ଇଚ୍ଛା କରିବ, ସେହିପରି ଚିତ୍ର ଉଠାଇନେବ ।

ବୁଣିବା ସମୟରେ ପ୍ରତି ୯ ଇଞ୍ଚ ବା ୧୨ ଇଞ୍ଚ ବୁଣିବା ପରେ ବରାବର ଆସନ ଖଣ୍ଡିକର ଦୁଇ ପାଖରେ ଦୁଇଖଣ୍ଡି ଡୋର ଲଗାଇ ତାହାକୁ ଫରମାର ଦୁଇ ବାହୁରେ ଖୁବ୍ ଟାଣ କରି ଭିଡ଼ି ବାନ୍ଧି ଦେଉଥିବ । ତାହାହେଲେ ଆସନ ଖଣ୍ଡିକ ମୂଳରୁ ଶେଷ ପର୍ଯ୍ୟନ୍ତ ସମାନ ହୋଇ ବାହାରିବ । କୌଣସିଠାରେ ଯାକି ହୋଇଯିବାର ଆଶଙ୍କା ରହିବ ନାହିଁ ।

ଫରମା ଛଡ଼ା ଅଧିକ ସ୍ଥାନ ବନ୍ଦ ନ କରି ଯେ ଯାହା ଘରେ ଆଉ ଟିକିଏ ଟିକିଏ ବଡ଼ ଆକାରର ସତରଞ୍ଜି ମଧ୍ୟ ଲୋକେ ସହଜରେ ବୁଣି ପାରିବେ । ସେଥିପାଇଁ ଯେ ଯାହାର ଘରେ କାନ୍ଥ ନିକଟରେ, ପିଣ୍ଡାରେ ବା ଯାହାର ଯେଉଁଠାରେ ସୁବିଧା ଥିବ ସେ ସେଠାରେ ଏହିପରି ସତରଞ୍ଜି ବୁଣି ପାରିବେ । ଘରର ଚାଳରୁ ସେ କୌଣସି ଶେଣୀରେ ବା ଦୁଇ ଗୋଟି ଖୁଣ୍ଟରେ ବା ଦୁଇ ଗୋଟି ରୁଅରେ ଖଣ୍ଡିଏ ସରଳ ଓ ଶକ୍ତ ବାଉଁଶ ବାନ୍ଧି ଦେବ ।

ପୂର୍ବେ ଟାଣୀ କରିବାର ଯେଉଁ ପ୍ରଣାଳୀ ବର୍ଣ୍ଣିତ ହୋଇଅଛି, ସେହି ପ୍ରଣାଳୀରେ ସତରଞ୍ଜିଟି କମକ୍ରେ ଯେତେ ଚଉଡ଼ାର ଟାଣୀ ଆବଶ୍ୟକ,ସେହି ଚଉଡ଼ାର ଗୋଟିଏ ଟାଣୀ ପ୍ରସ୍ତୁତ କରି ତାହାର ଦୁଇ ମୁଣ୍ଡରେ ଦୁଇଖଣ୍ଡି ଟାଣ ଓ ସରଳ ବାଉଁଶ ଖଞ୍ଜିଦେବ । ସେହି ଟାଣୀଟିକୁ ଗୃହ ବା ଖୁଣ୍ଟରେ ବାନ୍ଧିଥିବା ବାଉଁଶରେ ତାହାର ତଳକୁ ଉତ୍ତମରୂପେ ବାନ୍ଧି ଝୁଲାଇ ଦେବ । ଦୁଇ ମୁଣ୍ଡରେ ଶକ୍ତ ଗଣ୍ଠି ଦେବା ଛଡ଼ା ମଝିରେ ସ୍ଥାନେ ସ୍ଥାନେ ଅଧିକ ଗୋଟି କେତେ ଗଣ୍ଠି ଦେଇ ବାନ୍ଧିବ । ତଳ ବାଉଁଶଟିର ତଳକୁ ଆବଶ୍ୟକ ହେଲେ ଆଉ ଖଣ୍ଡିଏ ଶକ୍ତ ବାଉଁଶ ଯୋଡ଼ି ତାହାକୁ ମଧ୍ୟ ସେହି ବାଉଁଶଟି ସଙ୍ଗେ ଦୁଇ ମୁଣ୍ଡରେ ଓ ତାହାର ମଝିରେ ସ୍ଥାନେ ସ୍ଥାନେ ଗୋଟିକେତେ ଗଣ୍ଠି ଦେଇ ଶକ୍ତ କରି ବାନ୍ଧିଦେବ । ତଳର ଏହି ବାଉଁଶ ଖଣ୍ଡିକରେ ଦୁଇ ଓଜନଖଣ୍ଡି ପଥର ବାନ୍ଧି ଝୁଲାଇ ଦେବ ତାହାହେଲେ ଟାଣୀଟି ବେଶ୍ ଟାଣି ହୋଇ ଝୁଲି ରହିବ ।



୮ ନମ୍ବର ଚିତ୍ର

ଏଥର ଟାଣୀ ସୂତାଗୁଡ଼ିକ ତାହାରେ ସମାନଭାବରେ ବସି ନ ଥିଲେ ସେଗୁଡ଼ିକୁ ସଙ୍କାଡ଼ି ସମାନ କରି ବସାଇଦେବ । ତା ପରେ ଫରମାରେ ସତରଞ୍ଜି ଆସନ କମକ୍ରେ ବଅ ବାନ୍ଧିବାର ଯେଉଁ ପ୍ରଣାଳୀ ବର୍ଣ୍ଣିତ ହୋଇଅଛି, ଠିକ୍ ସେହି ପ୍ରଣାଳୀରେ ଗୋଟିଏ ଧାଡ଼ି ବଅ ବାନ୍ଧିବ । ମାତ୍ର ସତରଞ୍ଜି ଖଣ୍ଡି ଯେବେ ଅଧିକ ଚଉଡ଼ା କରିବାକୁ ଇଚ୍ଛା କର ତେବେ ବଅ ମଧ୍ୟ ଏଥିରେ ଅଧିକ ଲମ୍ବା ହେବ । ବଅ ଲମ୍ବା ହେଲେ ତାହା ଖସି ଯିବାର ସମ୍ଭବ; ତେଣୁ ବଅ ବାନ୍ଧିବାବେଳେ



୯ ନମ୍ବର ଚିତ୍ର

ବଅ ସୂତାକୁ ଯେବେ ଥରେ ମୋଡ଼ିଦେଇ ବଅଡାଙ୍ଗି ଉପରେ ଆଉ ଖଣ୍ଡ ଏ ସରୁ କାଠି ସଙ୍ଗେ ଛନ୍ଦି ଦିଆଯାଏ, ତାହାହେଲେ ଖସିଯିବାର ଆଉ କୌଣସି ଆଶଙ୍କା ରହିବ ନାହିଁ । ପୁଣି ବଅ ଅଧିକ ଲମ୍ବା ହେଲେ ତହିଁର ଫେରିଗୁଡ଼ିକୁ ସମାନ ରଖିବାରେ ମଧ୍ୟ କଠିନ ହୋଇପଡ଼ିବ । ସେଥିପାଇଁ ୧୦ ନମ୍ବର ଚିତ୍ର ପରି ଖଣ୍ଡିଏ ପଟା ବ୍ୟବହାର କଲେ ବଅ ଫେରି-ଗୁଡ଼ିକ ଅସମାନ ହେବାର ଆଉ ଆଶଙ୍କା ରହିବ ନାହିଁ । ଏହି ପଟାଖଣ୍ଡିକୁ ବଅପଟା କହନ୍ତି । ଏହାର ଦାଢ଼ଗୁଡ଼ିକ ବେଶ୍ ଚିକ୍କଣ ଏବଂ ଏହାର ଅଗରେ ଗୋଟିଏ ଛିଦ୍ର ଅଛି । ତହିଁରେ ଖଣ୍ଡିଏ ସୂତା ବନ୍ଧା ହୋଇଅଛି ।

ଏହି ବଅ ପଟା ସାହାଯ୍ୟରେ ବଅ ଉଠାଇବା ପାଇଁ ପ୍ରଥମେ ଖଣ୍ଡିଏ ସରୁ ଓ ଲମ୍ବା ଦାଢ଼ି ବଅପଟା ଉପରେ ରଖି ପ୍ରତି ଟାଣୀ ସୂତାର ଫାଙ୍କରୁ ବଅଡୋର ଖଣ୍ଡିକ ବାମ ଅଙ୍ଗୁଳିରେ



୧୦ ନମ୍ବର ଚିତ୍ର

ଟାଣିନେଇ ଏକ ଫେରି ମୋଡ଼ିଦେବ ଏବଂ ସେହି ଫେରିଟି ଆଗେ ସରୁ କାଠିଟିରେ ବସାଇ ଦେଇ ଡୋରଟିକୁ ବଅପଟା ତଳେ ବୁଲାଇ ନେବ । ବଅ ପଟାର ଅଗରେ ଲାଗିଥିବା ସୂତା ଖଣ୍ଡିକରେ ଖଣ୍ଡିଏ ଡୋର ଛନ୍ଦି ଦେଇଥିବ । ଯେତେଗୁଡ଼ିଏ ଫେରି ଆଗକୁ ଛନ୍ଦି ହୋଇ ଯାଉଥିବ, ପଛରୁ ସେତେ ଫେରି ଆପେ ଆପେ ବଅପଟାରୁ ଖସିଯାଉଥିବ ଏବଂ ତହିଁ ମଧ୍ୟରେ ବଅପଟା ଅଗରେ ଲାଗିଥିବା ଡୋର ଖଣ୍ଡିକ ରହି ଯାଉଥିବ । ବଅ ବନ୍ଧା ଶେଷ ହେଲେ ଡୋରଟି ସଙ୍ଗେ ସଙ୍ଗେ ବଅଡାଙ୍ଗି ଗୋଟିଏ ଯୋଡ଼ି ତାହା ଉପରେ ବଅଗୁଡ଼ିକ ସମାନଭାଗରେ ସଜାଡ଼ି ବଅଡାଙ୍ଗି ସଙ୍ଗେ ଯେଉଁ ସରୁ କାଠିରେ ବଅଗୁଡ଼ିକ ଏକପରସ୍ତ ଛନ୍ଦା ହୋଇଥିଲା, ସେହି କାଠିକୁ ମିଶାଇ ଦୁଇମୁଣ୍ଡରେ ଓ ମଝିରେ କେତେକ ଜାଗାରେ ଶକ୍ତ କରି ଗୋଟିକେତେ ଗଣ୍ଠି ବାନ୍ଧିଦେବ ।

ବଅ ଧାଡ଼ିଟି ଅଧିକ ଲମ୍ବା ହୋଇ ଉଠିବାରୁ ଅସୁବିଧା ବୋଧହେଲେ ତାହାକୁ ଦୁଇ ଭାଗ କରିଦେବ । ଅର୍ଥାତ୍ ବାମରୁ ମଝି ପର୍ଯ୍ୟନ୍ତ ଗୋଟିଏ ବଅଡାଙ୍ଗ ଏବଂ ତାହାଠାରୁ ମଝିପର୍ଯ୍ୟନ୍ତ ଆଉ ଗୋଟିଏ ବଅଡାଙ୍ଗ ହେବ । ୧୧ନମ୍ବର ଚିତ୍ର ଦେଖ । ତାହାହେଲେ ବୁଣିବାବେଳେ ବଅ ଉଠାଇବାକୁ କୌଣସି ଅସୁବିଧା ହେବ ନାହିଁ ଓ ମଧ୍ୟ ଏକ ସମୟରେ ଦୁଇପାଖରେ ଦୁଇଜଣ ସତରଞ୍ଜି ବୁଣି ପାରିବେ । ତାହାହେଲେ ଦୁହେଁ ଦୁଇଗୋଟି ବଅକୁ ଧରି ଏକ ସମୟରେ ଉଠାଇ ବୁଣିଲେ ଆଉ କୌଣସି ଅସୁବିଧା ରହିବ ନାହିଁ । ଫରମାରେ ଯେଉଁ ପ୍ରଣାଳୀରେ ବୁଣିବାର ଦେଖାଇ ଦିଆଯାଇଅଛି ଏହାକୁ ମଧ୍ୟ ଠିକ ସେହି ପ୍ରଣାଳୀରେ ବୁଣିବ । ଏହାର କନାସ୍ତ ରଖିବାକୁ ହେଲେ ସେହି ପ୍ରଣାଳୀରେ କନାସ୍ତ ଯେତେ ଚଉଡ଼ା କରିବାକୁ ଇଚ୍ଛା କର, ସେହି ଚଉଡ଼ାରେ ଛୋଟ ଛୋଟ କଣ୍ଡା କାଟି କରି କନାସ୍ତ ବୁଣିବ । ଚିତ୍ର ବଚିତ୍ର କରିବାକୁ ଇଚ୍ଛାକଲେ ମଧ୍ୟ ପୂର୍ବବର୍ଣ୍ଣିତ ପ୍ରଣାଳୀରେ ଛୋଟ ଛୋଟ କଣ୍ଡା



୧୧ ନମ୍ବର ଚିତ୍ର

କାଟିକରି ଭିନ୍ନ ଭିନ୍ନ ରଙ୍ଗର ଭରଣୀ ସୂତା ଗୁଡ଼ାଇ ପୂର୍ବବର୍ଣ୍ଣିତପ୍ରଣାଳୀରେ ସତରଞ୍ଜି କନାସ୍ତରେ ବା ତାହା ଦେହରେ ଚିତ୍ର ଉଠାଇ ପାରିବ । ୧୨ ନମ୍ବର ଚିତ୍ର ଦେଖ ।



୧୨ ନମ୍ବର ଚିତ୍ର



୧୩ ନମ୍ବର ଚିତ୍ର

ଗୃହରୁ ଝୁଲାଇବାକୁ ସୁବିଧା ନଥିଲେ କାନ୍ଥରେ ଲାଗିଥିବା ବାହୁଆ ଦୁଇଟି ଉପରେ ଗୋଟିଏ ବାଉଁଶ ରଖିଦେଇ ସେହି ବାଉଁଶରୁ ସତରଞ୍ଜିର ଟାଣୀକୁ ଝୁଲାଇ ଠିକ୍ ପୂର୍ବ ବର୍ଣ୍ଣିତ ମତେ ସତରଞ୍ଜି ବୁଣି ପାରିବ । ଯେଉଁଠାରେ ବାହୁଆ ସୁବିଧାରେ ନ ଥିବ ସେ କୌଣସି କାନ୍ଥରେ ଦୁଇଖଣ୍ଡି ଟାଣ ବାଉଁଶର ବା କାଠର ଡାଙ୍ଗିଆ ବା ଖିଲା ଶକ୍ତ କରି ପୋତିଦେଇ ସେହି ଡାଙ୍ଗିଆ ଦୁଇଟିର ଉପରେ ଗୋଟିଏ ବାଉଁଶ ରଖି ସେହି ବାଉଁଶରୁ ସତରଞ୍ଜିର ଟାଣୀକୁ ଝୁଲାଇ କରି ମଧ୍ୟ ପୂର୍ବବର୍ଣ୍ଣିତ ପ୍ରଣାଳୀରେ ସହଜରେ ସତରଞ୍ଜି ବୁଣି ପାରିବ ।

ଗଡ଼ଜାତ ଅଞ୍ଚଳରେ ଏବଂ ଅନୁଗୋଳ ପ୍ରଭୃତି ସ୍ଥାନମାନଙ୍କରେ ଦଉଡ଼ି ବୁଣା ଖଟିଆର ବହୁଳ ବ୍ୟବହାର ଅଛି । ଦଉଡ଼ିଗୁଡ଼ିକ ଛିଣ୍ଡିଗଲେ କାଠ ଫରମା ଖଣ୍ଡିକ ଅନେକ ସମୟରେ ଖାଲି ପଡ଼ିଥାଏ । ସେହି ଫରମା ଖଣ୍ଡିକରେ ଅତି ସହଜରେ ସତରଞ୍ଜି ବୁଣାଯାଇ ପାରିବ । ୧୩ ନମ୍ବର ଚିତ୍ର ପରି ଖଟିଆ ଫରମାଟି କାନ୍ଥକୁ ଡେରି ଦେବ । ତହିଁର ଉପର ଆଡ଼ରେ ଖଣ୍ଡିଏ ଟାଣ ବାଉଁଶ ବାନ୍ଧି ତହିଁରେ ସତରଞ୍ଜିର ଟାଣୀକୁ ଝୁଲାଇ ଦେବ । ପୁଣି ତଳ ପାଖର ଟାଣୀରେ ବାଉଁଶ ଖଣ୍ଡିଏ ଦେଇ ତାହାକୁ ଖଟିଆ ଫରମା'ର ତଳପାଖରେ ବାହୁରେ ଶକ୍ତ କରି ବାନ୍ଧିଦେବ । ଖୁରା ଚାରିଗୋଟି ଉପରେ ଚିତ୍ର ଅନୁକରଣରେ ଦୁଇଖଣ୍ଡି ବାଉଁଶ ବାନ୍ଧିଦେବ କିମ୍ବା ଦୁଇଖଣ୍ଡି କାଠକୁ କଣ୍ଟା ମାରି ଲଗାଇ ଦେବ । ସେହି ବାଉଁଶ ଦୁଇଖଣ୍ଡ ଉପରେ ଆଉ ଖଣ୍ଡିଏ ବାଉଁଶକୁ ଅଡ଼କରି ବାନ୍ଧିବ ।

ଏପର୍ଯ୍ୟନ୍ତ ଯେତେ ପ୍ରକାର ସତରଞ୍ଜି ବୁଣିବାର ପ୍ରଣାଳୀ ବର୍ଣ୍ଣିତ ହେଲା ତାହା ଗୋଟିଏ ବଅଦ୍ୱାରା ଦେଖାଇ ଦିଆ ଯାଇଅଛି । ଖଟିଆ ଫରମାରେ ବୁଣିବାକୁ ହେଲେ ସେହିପରି ଗୋଟିଏ ବଅରେ ମଧ୍ୟ ବୁଣାଯାଇ ପାରିବ । ଇଚ୍ଛାକଲେ ଦୁଇଗୋଟି ବଅ ଖଞ୍ଜି ମଧ୍ୟ ବୁଣାଯାଇ ପାରିବ । ଦୁଇଗୋଟି ବଅ ବାନ୍ଧିବାକୁ ହେଲେ ପୂର୍ବବର୍ଣ୍ଣିତ ମତେ ଗୋଟିଏ ବଅ ବାନ୍ଧିବାବେଳେ ଟାଣୀ ସୂତାଗୁଡ଼ିକ ଯୁଅପଟାଦ୍ୱାରା ଦୁଇ ଭାଗରେ ବିଭକ୍ତ କରି ଏକଭାଗ ତଳକୁ ଓ ଏକଭାଗ ଉପରକୁ ରଖିବ ଓ ଦୁଇଭାଗର ଫାଙ୍କ ମଧ୍ୟରେ ବଅ

ଡୋରକୁ ଘୁରାଇ ବଅ ବାନ୍ଧିବାବେଳେ ଉପରକୁ ଥିବା ଏକଭାଗ ଟାଣୀ ସୂତାକୁ ବଅରେ ଛନ୍ଦିବ । ଆଉ ଗୋଟିଏ ବଅ ବାନ୍ଧିବାକୁ ହେଲେ ବାକି ଥିବା ଟାଣୀ ସୂତାଗୁଡ଼ିକୁ ଦ୍ୱିତୀୟ ବଅରେ ଛନ୍ଦିବାକୁ ପଡ଼ିବ । ସେଥିପାଇଁ ସୁଅକାଠିଟି ଉପରକୁ ଉଠାଇଦେଲେ ଯେଉଁ ସୂତାଗୁଡ଼ିକ ତଳକୁ ଥିବ ସେଗୁଡ଼ିକ ଉପରକୁ ଉଠିଯିବ ଏବଂ ଗୋଟିଏ ଫାଙ୍କ ହୋଇଯିବ । ସେହି ଫାଙ୍କ ମଧ୍ୟରେ ଆଉ ଖଣ୍ଡିଏ ବତା ବା ସୁଅପଟା ଦେଇ ମୋଡ଼ିଦେବ ଏବଂ ସେହି ଫାଙ୍କ ମଧ୍ୟରେ ଆଉ ଗୋଟିଏ ବଅଡୋର ଠିକ୍ ପୂର୍ବପରି ଡାହାଣରୁ ବାମକୁ ଘୁରାଇ ପ୍ରଥମ ବଅ ବାନ୍ଧିବା ପ୍ରଣାଳୀରେ ଆଉ ଗୋଟିଏ ବଅ ବାନ୍ଧି ନେବ ।

ଦୁଇଗୋଟି ବଅ ବନ୍ଧା ହୋଇଗଲେ ଦୁଇ ବଅର ବଅଡାଙ୍ଗିରେ ଦୁଇଖଣ୍ଡ ଲେଖାଏଁ ଡୋର ବାନ୍ଧିବ । ୧୪।୧୫ ଇଞ୍ଚ ଲମ୍ବାର ଆଉ ଦୁଇଖଣ୍ଡ ବାଉଁଶଡାଙ୍ଗି ନେବ । ବଅଡାଙ୍ଗିରୁ ବାନ୍ଧିଥିବା ଡୋର ୪ଖଣ୍ଡରୁ ବାମ ପାଖକୁ ଥିବା ଦୁଇ ବଅଡାଙ୍ଗିର ଦୁଇଟି ଡୋର ଖଣ୍ଡିଏ ବାଉଁଶ ଡାଙ୍ଗିର ଦୁଇ ମୁଣ୍ଡରେ ଏବଂ ଡାହାଣ ପାଖକୁ ଥିବା ଦୁଇ ବଅଡାଙ୍ଗିର ଦୁଇଖଣ୍ଡି ଡୋର ଆଉ ଖଣ୍ଡିଏ ବାଉଁଶଡାଙ୍ଗିର ଦୁଇ ମୁଣ୍ଡରେ ବାନ୍ଧିଦେବାକୁ ହେବ । ବାନ୍ଧିବା ସମୟରେ ଗୋଟିଏ ବଅଡାଙ୍ଗିର ଦୁଇଟି ଡୋର ଅନ୍ୟ ବଅଡାଙ୍ଗିର ଦୁଇଟି ଡୋରଠାରୁ ଲମ୍ବାରେ ୩୪ ଇଞ୍ଚ ଛୋଟ ରହିବ । ଏହି ବାଉଁଶଡାଙ୍ଗି ଦୁଇଖଣ୍ଡି ଖଟିଆର ଗୋଡ଼ ଉପରେ ଲାଗିଥିବା ବାଉଁଶ ଦୁଇଟି ବା ପଟା ଦୁଇଟିର ଉପରେ ଯେଉଁ ଅଡ଼ଖଣ୍ଡିକ ବନ୍ଧା ଯାଇଥିବ, ତାହାର ଉପରେ ବିଶ୍ରାମ କରିବେ । ବୁଣିବାବେଳେ ଡାଙ୍ଗି ଦୁଇଟିର ଗୋଟିଏ ମୁଣ୍ଡ ବିଶ୍ରାମ ବାଉଁଶ ଖଣ୍ଡିକରେ ଝୁଲାଇ ଦେଲେ ଏକଧାଡ଼ି ବଅ ଉଠି ଗୋଟିଏ ଫାନ୍ଦ ଉଠିଯିବ । ତାହାହେଲେ ତହିଁରେ ଭରଣୀ ସୂତା ଥରେ ବୁଣି ପାରିବ । ଡାଙ୍ଗି ଦୁଇଟିର ଅନ୍ୟ ମୁଣ୍ଡକୁ ଟାଣି ବିଶ୍ରାମ ବାଉଁଶରେ ଝୁଲାଇ ଦେଲେ ଆଉଧାଡ଼ିଏ ବଅ ଉଠି ଅନ୍ୟ ଫାନ୍ଦଟି ଉଠିଯିବ । ତାହାହେଲେ ପଞ୍ଝାଦ୍ୱାରା ପୂର୍ବଥରର ଭରଣୀ ସୂତାକୁ ଉତ୍ତମରୂପେ ପିଟି ବସାଇଦେଇ ଆଉଥରେ ଭରଣୀ ସୂତା ବୁଣିବ । ଏଥିରେ କଣ୍ଡାକାଠି ସତରଞ୍ଜିର ଚଉଡାଠାରୁ ବଡ଼ ହେବାର ଅବଶ୍ୟକ ନାହିଁ । ୨ ଫୁଟ ବା ୩ ଫୁଟର ଗୋଟିଏ କଣ୍ଡାକାଠି ହେଲେ ତାହାକୁ ଫାନ୍ଦ ମଧ୍ୟରେ ଚଳାଇ ଦେଇ ବୁଣିବାକୁ ହେବ । ଏଥିରେ ମଧ୍ୟ କଳାର ଓ ଚିତ୍ରବିଚିତ୍ର କରି ବୁଣିବାକୁ ହେଲେ ଆସନ ବୁଣିବାରେ ଯେଉଁ ପ୍ରଣାଳୀରେ ଚିତ୍ରବିଚିତ୍ର କରି ବୁଣିବାର ଉଲ୍ଲେଖ ଅଛି ଠିକ ସେହି ପ୍ରଣାଳୀରେ ଏଥିରେ ଚିତ୍ର ବିଚିତ୍ର କରି ବୁଣି ପାରିବ ।

ବେଶୀ ବଡ଼ ସତରଞ୍ଜି ସବୁକୁ ଭୂମିରେ ବିସ୍ତାର କରି ବୁଣିବାକୁ ହୁଏ । ସେଥିପାଇଁ ଗୋଟିଏ ସମତଳ ସ୍ଥାନ ସ୍ଥିର କରିବ । ତହିଁର ଏକ ପ୍ରାନ୍ତରେ ଦୁଇଗୋଟି ଖୁଣ୍ଟ ପୋତିବ ଓ ଅନ୍ୟ



୧୪ ନମ୍ବର ଚିହ୍ନ

ପ୍ରାନ୍ତରେ ଠିକ୍ ତାହାର ସମାନରେ ସମକୋଣ ରଖି ଆଉ ଦୁଇଗୋଟି ଖୁଣ୍ଟ ପୋତିବ । ଦୁଇ ପ୍ରାନ୍ତର ଖୁଣ୍ଟ ଦୁଇ ଧାଡ଼ିରେ ଭୂମିରୁ ପ୍ରାୟ ୧ ଫୁଟ ଉଚ୍ଚରେ ଦୁଇଖଣ୍ଡି ଶକ୍ତ ଏବଂ ମୋଟ ବାଉଁଶ ବା କାଠର ରୋଲର (Roller) ବାନ୍ଧିବ । ତହିଁରେ ଆଉ ଖଣ୍ଡିଏ ଲେଖାଏଁ ସରଳ ଏବଂ ଶକ୍ତ ବାଉଁଶ ବା ଲୁହା ଛଡ଼ ବାନ୍ଧିଦେବ । ଏହି ସରଳ ବାଉଁଶ ବା ଲୁହାଛଡ଼ ଦୁଇଟିରେ ଟାଣି ସୂତା ଲଗାଇବ । ଟାଣି ସୂତା ଭଲ ଉପର ଦୁଇ ପରସ୍ତକୁ ପୁଣି ଖଣ୍ଡିଏ ଡୋରଦ୍ୱାରା ଏକାଠି ଛନ୍ଦ ଏକ ଧାଡ଼ିରେ ରଖି ସମାନ କରିବ । ଟାଣି ସୂତାଗୁଡ଼ିକ ସମାନ ସମାନ ଅନ୍ତରରେ ରଖି ଟାଣିକୁ ସଜାଡ଼ି ଦେବ । ତାପରେ ତହିଁରୁ ବଅ ଉଠାଇବ ।

ଏଥିରୁ ଠିକ୍ ପୂର୍ବବର୍ଣ୍ଣିତ ପ୍ରଣାଳୀରେ ଯୁଅପଠା ଏବଂ ବଡ଼ା ଲଗାଇ ଦୁଇଧାଡ଼ି ବଅ ଉଠାଇ ବାନ୍ଧିଦେବ । ୧୪ ନମ୍ବର ଚିହ୍ନ ପରି ଟାଣିର ଦୁଇ ପାଖରେ ଦୁଇଗୋଟି କାଠର ବା ବାଉଁଶର ଦୁଇଗୋଟି ଉପାଧ୍ୟା ରଖି ତହିଁ ଉପରେ ଗୋଟିଏ ଶକ୍ତ ବାଉଁଶ ରଖିଦେବ । ଏହି ବାଉଁଶଟି ଏଠାରେ ବିଶ୍ରାମ ବାଉଁଶ ହେବ । ଏହାର ଉପରେ ବଅ ସଙ୍ଗେ ବନ୍ଧା ଯାଇଥିବା ଛୋଟ ଡାଙ୍ଗିଆ ଦୁଇଖଣ୍ଡି ବିଶ୍ରାମ କରିବ ।

ଟାଣିରେ ବଅ ଦୁଇଧାଡ଼ି ବନ୍ଧା ହୋଇଗଲେ ଦୁଇ ଟାଣିରୁ ଦୁଇଖଣ୍ଡି ଲେଖାଏଁ ଡୋର ନେଇ ୧୩।୧୪ ଇଞ୍ଚ ଲମ୍ବାର ଦୁଇଖଣ୍ଡି ଡାଙ୍ଗିଆର ଦୁଇମୁଣ୍ଡରେ ୧୪ ନମ୍ବର ଚିହ୍ନରେ ଯେପରି ବନ୍ଧା ଯାଇଅଛି ସେହିପରି ବାନ୍ଧିବ । ଏହି ଡାଙ୍ଗିଆ ଦୁଇଟି ବିଶ୍ରାମ ବାଉଁଶ ଉପରେ ରହିବ । ଡାଙ୍ଗିଆ ଦୁଇଟିର ଦୁଇ ପାଖରେ ବନ୍ଧାଯାଇଥିବା ଡୋର ଚାରି ଗୋଟି ମଧ୍ୟରୁ ଏକ ପାଖର ଡୋର ଦୁଇଟି ଅନ୍ୟ ପାଖର ଡୋର ଦୁଇଟିଠାରୁ ପ୍ରାୟ ୩ ଇଞ୍ଚ ବା ୩½ ଇଞ୍ଚ ବଡ଼ ରହିଥିବ । ସେହି ଡାଙ୍ଗିଆ ଦୁଇଟିକୁ ଥରେ ଉଠାଇ ବିଶ୍ରାମ ବାଉଁଶର ଏକପାଖକୁ ଝୁଲାଇଦେଲେ ଗୋଟିଏ ଧାଡ଼ି ବଅ ଉଠି ଗୋଟିଏ ଫାନ୍ଦ ଉଠିବ ଏବଂ ଡାଙ୍ଗିଆ ଦୁଇଟିର ଅନ୍ୟ ପାଖକୁ ଉଠାଇ ବିଶ୍ରାମ ବାଉଁଶରେ ଝୁଲାଇଦେଲେ ଆଉ ଧାଡ଼ିଏ ବଅ ଉଠି ଅନ୍ୟ ଫାନ୍ଦଟି ଉଠିଯିବ । ପ୍ରତିଥର ଫାନ୍ଦ ଉଠିବାରେ ଥରେ ଲେଖାଏଁ ଭରଣୀସୂତା ବୁଣିପାରିବ । ଅଟରେ ବୁଣି ତାହାକୁ ଉତ୍ତମରୂପେ ପଞ୍ଝାରେ ପିଟି ଦେଉଥିବ । ଏହିପରି ବୁଣି ଯେତେ ବଡ଼ କରିବାର ଇଚ୍ଛା ତେତେବଡ଼ ପର୍ଯ୍ୟନ୍ତ ବୁଣିପାରିବ

ପୂର୍ବେ ବୁଣିବାର ଯେଉଁ ପ୍ରଣାଳୀ ବର୍ଣ୍ଣିତ ହୋଇଅଛି, ଏହାକୁ ମଧ୍ୟ ଠିକ୍ ସେହି ପ୍ରଣାଳୀରେ ବୁଣିବାକୁ ହେବ । ଭୂମିରେ ବିସ୍ତାର ହୋଇଥିବାରୁ ବୁଣିବାର ପ୍ରଣାଳୀରେ କୌଣସି ପ୍ରଭେଦ ନାହିଁ । ଏଥିରେ ଶନ୍ଦ ବଡାନ୍ଦ କରି ବୁଣିବା ଅଧିକ ସୁବିଧାଜନକ । ଯେତେ ବୁଣା ହୋଇ ଯାଉଥିବ ତାହାକୁ ପାଲ କା ଚଟେଇଦ୍ୱାରା ଢାଙ୍କି ଦେଉଥିବ, ତାହାହେଲେ ବୁଣା ଅଂଶରେ ମଇଳା ପଡ଼ିବ ନାହିଁ । ବୁଣା ଅଂଶର ତଳେ ଗୋଟିଏ ପୀଢ଼ା ଏବଂ ଉପରେ ଖଣ୍ଡିଏ ପଟା ପକାଇ ସେହି ପଟା ଉପରେ ଏକ ସମୟରେ ଦୁଇ ଜଣ ବା ଅଧିକ ଲୋକ ବସି ବୁଣି ପାରିବେ ।


୧୪ ନମ୍ବର ଚିତ୍ର

ସତରଞ୍ଜିର ଶୋଭାବୃଦ୍ଧି ନିମନ୍ତେ ଭିନ୍ନ ଭିନ୍ନ ରଙ୍ଗର ସାମଞ୍ଜସ୍ୟ ରଖିବା ପ୍ରଧାନ କଥା । ଯେଉଁ ରଙ୍ଗ ସଙ୍ଗେ ଯେଉଁ ରଙ୍ଗ ମେଳ ଖାଇବ ଯାହା ପରେ ଯାହାକୁ ବୁଣିଲେ ଅଧିକ ରୋଚକ ହେବ, ଏହିସବୁ ବିଷୟ ଆଗେ ବିବେଚନା କରି ବୁଣିବା ଆବଶ୍ୟକ ।

ଟାଣୀ ନିମନ୍ତେ ୪ ଖିଅ, ୫ ଖିଅ ବା ୬ ଖିଅ ସୂତା ଏକାଠି ବଳି ତହିଁରେ ଟାଣୀ ପ୍ରସ୍ତୁତ କରିବ । ଟାଣୀପାଇଁ ଯେତେ ଖିଅ ନେବ ଭରଣୀପାଇଁ ତାହାଠାରୁ ୨।୩ ଗୋଟି ଖିଅ ଅଧିକ ନେବ । ଟାଣୀ ସୂତା ବଳା ହେବ । ଭରଣୀ ସୂତା ବଳିବାକୁ ହେବ ନାହିଁ । ସୂତା ସରୁ ବା ମୋଟ ଥିଲେ ଯେପରି ପଦାର୍ଥ ବୁଣିବ ତାହା ପ୍ରତି ଦୃଷ୍ଟି ରଖି ଟାଣୀ ଓ ଭରଣୀ ସୂତାର ପରିମାଣ ନିର୍ଣ୍ଣୟ କରିବ । ଭିନ୍ନ ଭିନ୍ନ ରଙ୍ଗର ସୂତାକୁ ଏକତ୍ର ମିଶାଇ ଭରଣୀ ସୂତା କଲେ ମଧ୍ୟ ପଦାର୍ଥଟି ସୁନ୍ଦର ଦେଖାଯିବ ।

---

# ଗାଲିଚା

ସତରଞ୍ଜି ବୁଣିବାପାଇଁ ଯେଉଁ ସବୁ ଉପକରଣ ଅବଶ୍ୟକ ଗାଲିଚା ବୁଣିବାପାଇଁ ସେଗୁଡ଼ିକ ସବୁ ଦରକାର । ତାହା ଛଡା ଅଧିକ ଗୋଟିଏ ତୀକ୍ଷ୍ଣ ଛୁରୀ ଓ ଗୋଟିଏ ତୀକ୍ଷ୍ଣ କଇଞ୍ଚି ଆବଶ୍ୟକ ।



ସାଧାରଣ ଛୁରୀ ଓ କଇଞ୍ଚିରେ ଗାଲିଚା କାର୍ଯ୍ୟ ସୁବିଧାରେ ହୋଇ ପାରିବ ନାହିଁ । ଏହାର ଛୁରୀ ଓ କଇଞ୍ଚି ସ୍ୱତନ୍ତ୍ର । ୧ ଓ ୨ ନମ୍ବର ଚିତ୍ରମାନଙ୍କରୁ କଇଞ୍ଚି, ୩ ଓ ୪ନମ୍ବର ଚିତ୍ରମାନଙ୍କରୁ ଗାଲିଚା ବୁଣିବାପାଇଁ ଲୋଡ଼ା ଛୁରୀ ଦେଖି ପାରିବ । ୩ ନମ୍ବର ଚିତ୍ରରେ ଯେଉଁ ଛୁରୀ ଖଣ୍ଡିକ ଦିଆଯାଇଅଛି ତାହା କଟକର କୁଟୀରଶିଳ୍ପ କାରଖାନାରେ ପ୍ରଥମେ ଉଦ୍ଭାବିତ ହୋଇଅଛି । ଏହା ଖଣ୍ଡିଏ କାଠରେ କେବଳ ରଦ୍ଦ ହୋଇଥିବା କଳ ଖୁରର ପାତିଆ (Safety razor blade) ଖଣ୍ଡିଏ ଲଗାଯାଇ ପେଞ୍ଚଦ୍ୱାରା ତାହାକୁ ବସାଇ ଦିଆଯାଇଅଛି ଓ ତହିଁରେ ଖଣ୍ଡିଏ ବେଣ୍ଟ ଲଗାଇ ଦିଆଯାଇଅଛି । ଏହା ଯେ କେହି ସହଜରେ ଆପଣା ହାତରେ କରି ପାରିବେ । ଖୁରପାତିଆ ଖଣ୍ଡିକ ଦନ୍ତୁଡା ହୋଇଗଲେ ବା ଦାଢ଼ ଭାଙ୍ଗିଗଲେ ତାହାକୁ ବଦଳାଇ ଆଉ ଖଣ୍ଡିଏ ସେହିପରି ଖୁରପାତିଆ ଲଗାଇ ପାରିବେ । ଏହାଦ୍ୱାରା ଗାଲିଚା ବୁଣିବା ସମୟରେ ସୂତାକୁ କାଟିଦେବା କାର୍ଯ୍ୟ ବେଶ୍ ସହଜରେ ଚାଲୁଅଛି ।

୧ ନମ୍ବର ଚିତ୍ର

ସତରଞ୍ଜି ବୁଣିବା ନିମନ୍ତେ ଯେପରି ଗୋଟିଏ ଗୋଟିଏ ଫରମାରେ ଟାଣୀ ସୂତାକୁ ଗୁଡ଼ାଇ ଗୁଡ଼ାଇ ତହିଁରୁ ବଅ ଉଠାଇ ସତରଞ୍ଜି ବୁଣିବାର ପ୍ରଣାଳୀ ପୂର୍ବେ ବର୍ଣ୍ଣିତ ହୋଇଅଛି, ଠିକ୍ ସେହି-ପରି ଖଣ୍ଡିଏ ଖଣ୍ଡିଏ ଫରମାରେ ଟାଣୀସୂତା ଗୁଡ଼ାଇ ତହିଁରୁ ବଅ ଉଠାଇ ପ୍ରଥମେ ସତରଞ୍ଜିରେ ଯେପରି ବୁଣିବାକୁ ହୁଏ ଠିକ୍ ସେହିପରି ୫।୬ ଖିଅ ବୁଣି ଦେବ । ତା ପରେ ଗାଲିଚାର କେଶର ବୁଣିବାକୁ ଆରମ୍ଭ କରିବ ।



୨ ନମ୍ବର ଚିତ୍ର

ଯେଉଁ ସୂତାରେ ଜାଲଗୁର କେଶର ବୁଣିବ, ସେହି ସୂତା ୧୨।୧୪ ଖିଅ ଏକାଠି ନେଇ ଗୋଟିଏ କେଶ କରି ଧରିବ । ଠାଣୀସୂତା ମଧ୍ୟରୁ ବାମ ପାଖରୁ ଦୁଇଟି ଲେଖାଏଁ ଖିଅ ନେଇ ତହିଁରେ



୩ ନମ୍ବର ଚିହ୍ନ



୪ ନମ୍ବର ଚିହ୍ନ

ସୂତା କେଶଟିକୁ ବୁଣି ଗୋଟିଏ ଗୋଟିଏ ଗଣ୍ଠି ପକାଇଯିବ । ପ୍ରଥମେ ବାମ ପାଖର ଦୁଇଗୋଟି ଠାଣୀ ସୂତାରେ ୫ ନମ୍ବର ଚିହ୍ନର ବାଆଁ ପାଖରୁ ପ୍ରଥମ ଗଣ୍ଠି ପରି ସୂତା କେଶଟିର ଗୋଟିଏ ମୁଣ୍ଡ ଠାଣୀ-ସୂତା ଦୁଇଟି ମଧ୍ୟରୁ ଡାହାଣ ପାଖ ସୂତାର ଡାହାଣ ପାଖରେ ପୂରାଇ ସୂତା ଦୁଇଟିର ମଝିରେ ବାହାର କରି ଆଣି ପୁଣି ତାହାକୁ ବାମ ପାଖ ସୂତାର ପଛ ପାଖ ଦେଇ ବୁଲାଇ ଆଣି ଦୁଇ ସୂତାର ମଝିରେ ବାହାର କରିବ ଏବଂ ତାହାକୁ ତହିଁର ଅନ୍ୟ ମୁଣ୍ଡ ସଙ୍ଗେ ସମାନ କରି ମିଶାଇ ଧରି ଛୁରିରେ କାଟିଦେବ । ତାପରେ ତହିଁର ଡାହାଣକୁ ଆଉ ଦୁଇଗୋଟି ଠାଣୀସୂତା ନେବ । ତହିଁରେ ପୁଣି ଠିକ୍ ପୂର୍ବପରି ବୁଣିବ । ଏହିପରି ଡାହାଣକୁ ପ୍ରତିଥର ଯୋଡ଼ିଏ ଲେଖାଏଁ ଠାଣୀ ସୂତାରେ ଥରେ ଲେଖାଏ ସୂତା କେଶଟିରୁ ଖଣ୍ଡିଏ ଲେଖାଏଁ ବୁଣି କ୍ରମେ କ୍ରମେ ଡାହାଣକୁ ବୁଣିଯିବ । ଛୁରି ଖଣ୍ଡିକ ୩ ଓ ୪ ନମ୍ବର ଚିହ୍ନପରି ଡାହାଣ ହାତରେ ମୁଠାଇ ଧରିଥିବ, ଯେପରି ବୁଢ଼ା ଅଙ୍ଗୁଠି ଓ ବଣି ଅଙ୍ଗୁଠି ସବୁ ସମୟରେ ଖୋଲା ରହିବ । ଛୁରିର ଦାନ୍ତି



୫ ନମ୍ବର ଚିହ୍ନ

ହାତମୁଠାର ତଳକୁ ରହିବ । କେଶର ଖଞ୍ଜିବାବେଳେ ଦୁଇ ହାତରେ ଖଞ୍ଜି ସଙ୍ଗେ ସଙ୍ଗେ ସୂତାକୁ କାଟି ଦେଉଥିବ । ମଝିଯାକେ ବୁଣିଗଲେ ସେଠାରେ ୫ ନମ୍ବର ଚିତ୍ରର ମଝି ଗଣ୍ଠିପରି ଗୋଟି କେତେ କେଶର ଖଞ୍ଜି ବୁଣିବ । ଅର୍ଥାତ୍ ସେଠାରେ ସୂତା ଗୋଛର ମୁଣ୍ଡକୁ ଟାଣୀସୂତା ଦୁଇଟିର ମଝିରେ ପୂରାଇ ତାହାକୁ ଡାହାଣ ପାଖର ଟାଣୀ ସୂତାର ପଛପଟେ ବୁଲାଇ ଆଣିବ ଏବଂ ବାଆଁ ପାଖ ଟାଣୀ ଉପରେ ନେଇ ତାହାପଛରେ ବୁଲାଇ ଆଣି ମଝିରେ ଛାଡ଼ିଦେବ ଏବଂ ଅପର ପ୍ରାନ୍ତ ସଙ୍ଗେ ମିଶାଇ ଛୁରୀରେ କାଟିଦେବ । ଶେଷଅଡ଼କୁ ୫ନମ୍ବର ଚିତ୍ରର ଡାହାଣ ପାଖର ଗଣ୍ଠି ପରି ବୁଣିଯିବ । ଅର୍ଥାତ୍ ସୂତାଗୋଛକୁ ଟାଣୀସୂତା ଦୁଇଟି ମଧ୍ୟରୁ ପ୍ରଥମେ ବାଆଁ ପାଖରେ ଯେପରି ଛନ୍ଦା ହୋଇଥିଲା ଠିକ୍ ତାହାର ବିପରୀତ ଭାବରେ ଛନ୍ଦିବାକୁ ହେବ । ଅର୍ଥାତ୍ ପ୍ରଥମେ ବାଆଁ ପାଖର ଟାଣୀସୂତାର ବାମ ପାଖରେ ସୂତାଗୋଛକୁ ପୂରାଇ ତହିଁର ପଛଆଡ଼େ ବୁଲାଇ ମଝିରେ ବାହାର କରିବ । ତା ପରେ ତାହାକୁ ଡାହାଣପାଖ ସୂତାର ଡାହାଣ ଅଡ଼େ ବୁଲାଇନେଇ ତହିଁର ପଛଅଡ଼େ ବୁଲାଇଆଣି ପୁଣି ଦୁଇ ସୂତାର ମଝିରେ ବାହାର କରି ତହିଁର ଅନ୍ୟ ମୁଣ୍ଡ ସଙ୍ଗେ ସମାନ କରି କାଟିଦେବ । ଏହିପରି ସବୁ ଟାଣୀଗୁଡ଼ିକରେ ଗୋଟିଏ ଧାଡ଼ି ବୁଣି ଶେଷ କରି ଦେବ । ତା ପରେ ସତରଞ୍ଜିର ଫାନ୍ଦ ଯେପରି ଉଠାଇବାକୁ ହୁଏ ଠିକ୍ ସେହିପରି ଗୋଟିଏ ଫାନ୍ଦ ଉଠାଇ ତହିଁରେ କଣ୍ଡାକାଠିଟି ପୂରାଇ ଥରେ ଭରଣୀସୂତା ବୁଣିଦେବ ଏବଂ ପଞ୍ଝାଦ୍ୱାରା ପିଟି ସମାନ କରିଦେବ । ପୁଣି ଆଉ ଗୋଟିଏ ଫାନ୍ଦ ଉଠାଇ ଆଉଥରେ ଭରଣୀସୂତା ବୁଣିବ । ଦରକାର ମନେ କଲେ ୩।୪ ଥର ଭରଣୀସୂତାକୁ ବୁଣି ଥରକୁଥର ଉତ୍ତମରୂପେ ପଞ୍ଝାରେ ପିଟି ଦେଉଥିବ । ତା ପରେ ପୁନଶ୍ଚ ସୂତାକେଶରକୁ ନେଇ ଠିକ୍ ପୂର୍ବପରି ଆଉ ଧାଡ଼ିଏ କେଶର ବୁଣିବ । ତାପରେ ପୁନର୍ବାର ୨।୩ ଥର ଭରଣୀସୂତା ବୁଣିବ । ଏହିପରି କ୍ରମାଗତ ଯେତେ ଲମ୍ବା ଆସନଖଣ୍ଡିକ ବୁଣିବାର ଥିବ, ତେତେ ଲମ୍ବା ହେବା ପର୍ଯ୍ୟନ୍ତ ବୁଣି ଶେଷ କରିବ ।

୫ନମ୍ବର ଚିତ୍ରରେ କେଶର ଖଞ୍ଜିବାରେ ତିନିପ୍ରକାର ଛନ୍ଦ ଦେଖାଇ ଦିଆ ଯାଇଅଛି । ବାମ ପାଖର ଛନ୍ଦପରି ବାମପାଖରୁ ବୁଣିବାକୁ ହେବ । ଡାହାଣ ପାଖର ଛନ୍ଦପରି ଡାହାଣ ପାଖରେ ବୁଣିବାକୁ ହେବ ଏବଂ ମଝିର ଛନ୍ଦଟି ପରି ମଝିରେ ବୁଣିବାକୁ ହେବ । ମାତ୍ର ଠିକ୍ ସବୁଠାରେ ଏହିପରି ଲାଗି କରି ନ ଖଞ୍ଜିଲେ କିଛି କ୍ଷତି ନାହିଁ । କିନ୍ତୁ ବାଆଁ ପାଖରୁ କେତେକ ଗୋଟି କିମ୍ବା ବାମ ପାଖର ଛନ୍ଦ ପରି ଏବଂ ଡାହାଣ ପାଖରୁ କେତେକ ଗୋଟି କିମ୍ବା ଡାହାଣ ପାଖର ଛନ୍ଦ ପରି ନ ବୁଣିଲେ କେଶରର ସୂତା ବାହାରି ଯିବାର ଭୟ ରହିବ ।

ଏଥର କେଶରର ପର ଯେଉଁ ସୂତାଗୁଡ଼ିକ ପଦାକୁ ବାହାରି ରହିଥିବ ତାହାକୁ କଇଁଚିରେ କାଟି ସମାନ କରିଦେବ । ଗାଲିଚାର ଟାଣି କମ୍ବା ଭରଣୀର ସୂତା କେହି ପଦାକୁ ଦେଖାଯିବେ ନାହିଁ । କେବଳ କେଶରଗୁଡ଼ିକ ପଦାକୁ ଦେଖାଯିବ; ତେଣୁ ଗାଲିଚା ଚିତ୍ର ବିଚିତ୍ର କରି ବୁଣିବାକୁ ହେଲେ କେବଳ ଯେଉଁ ସୂତା କେଶକୁ ବୁଣି କେଶର ବାହାର କରିବାକୁ ହେବ, ସେହିଗୁଡ଼ିକ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗାଇ ବୁଣିଲେ ଗାଲିଚା ଯେପରି ଚିତ୍ରିତ କରିବାକୁ ଇଚ୍ଛା କରିବ, ସେପରି ଚିତ୍ରିତ କରି ପାରିବ ।



୭ ନମ୍ବର ଚିତ୍ର

ସତରଞ୍ଜିଗୁଡ଼ିକ ଯେଉଁ ଯେଉଁ ପ୍ରଣାଳୀରେ ଘରର ଶେଣୀରୁ ଝୁଲାଇ କମ୍ବା କାନ୍ଥର ବାହୁଅରୁ ଝୁଲାଇ ବା ପୁରୁଣା ଖଟିଆର ଫରମାରୁ ଝୁଲାଇ ବୁଣିବା ବିଷୟ ବର୍ଣ୍ଣିତ ହୋଇଅଛି, ଠିକ ସେହି ସବୁ ପ୍ରଣାଳୀରେ ଗାଲିଚାର ଟାଣି ଝୁଲାଇ ଗାଲିଚା ବୁଣାଯାଇ ପାରିବ ।

ଗୃଳରୁ, କାନ୍ଥରୁ ବା ବଡ଼ ବଡ଼ ଖୁଣ୍ଟ ପୋତି ତହିଁରେ ଅଡ଼କାଠ ବାନ୍ଧି ତହିଁରୁ ଝୁଲାଇ ବଡ଼ ବଡ଼ ଗାଲିଚା ଓ ବଡ଼ ବଡ଼ ସତରଞ୍ଜି ସହଜରେ ବୁଣାଯାଇ ପାରିବ । କିନ୍ତୁ ପଦାର୍ଥଟି ଖୁବ ବଡ଼ ହେଲେ ତାହା କେତେକ ବୁଣା ହୋଇଗଲେ ଉପରକୁ ଆଉ ହାତ ପାଇବ ନାହିଁ, ତେଣୁ ବୁଣିବାକୁ ଅସୁବିଧା ହେବ । ସେଥିପାଇଁ ଆଉ ଦୁଇଗୋଟି ଖୁଣ୍ଟ ପୋତି ତହିଁରେ ଖଣ୍ଡିଏ ଖଣ୍ଡିଏ ଅଡ଼ ବାନ୍ଧି ତହିଁ ଉପରେ ବସିବା ପାଇଁ ଗୋଟିଏ ପଟା ପକାଇ ତହିଁ ଉପରେ ବସି ବୁଣିବ । ଏକ ସମୟରେ ଦୁଇଜଣ ବା ତିନିଜଣ ମଧ୍ୟ ବସି ବୁଣି ପାରିବେ । ଯେତେ ଉପରକୁ ବୁଣି ଯାଉଥିବ



୭ ନମ୍ବର ଚିତ୍ର

ଦୁଇପାଖର ଆଡ଼କାଠ ଦୁଇଖଣ୍ଡିକୁ କ୍ରମେ ଉପରକୁ ଉଠାଇ ତାହାଉପରେ ବସିବାର ପଟା ଖଣ୍ଡିକ ପକାଇ ବସିବା ସ୍ଥାନଟି ଉଚ୍ଚ କରି ନେଉଥିବ ।



୮ ନମ୍ବର ଚିତ୍ର

ତନ୍ତୀମାନେ ଲୁଗା ବୁଣିସାରି ଲୁଗାର ଦୁଇମୁଣ୍ଡରୁ ଯେଉଁ ଛୋଟ ଛୋଟ ଦଶିଗୁଡ଼ିକ କାଟି ପକାନ୍ତି, ସେଗୁଡ଼ିକ ଅଧିକାଂଶ ନଷ୍ଟ ହୁଏ । ସେହି ଦଶିଗୁଡ଼ିକ ସଂଗ୍ରହ କରି ତାହାକୁ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗାଇ ଗାଲିଚା ବୁଣିବାରେ ଗାଲିଚାର କେଶର ନିମନ୍ତେ ସହଜରେ ବ୍ୟବହାର କରାଯାଇ ପାରେ ।

ମେଣ୍ଢାଲୋମରୁ ସୂତା କାଟି ସେହି ସୂତାକୁ ମଧ୍ୟ ରଙ୍ଗାଇ ଗାଲିଚାରେ ବ୍ୟବହାର କରି ପାରିବ । ମେଣ୍ଢା ଲୋମର ଯେଉଁ ସୂତା ଗୁଡ଼ିକ କମ୍ବଳ ବୁଣିବା ପରେ କଟିଯାଏ ବା ଯେଉଁ ଗୁଡ଼ିକରେ କମ୍ବଳ ବୁଣାଯାଇ ନ ପାରିବ, ସେଗୁଡ଼ିକ ଗାଲିଚାର କେଶର ପାଇଁ ବ୍ୟବହୃତ ହୋଇ ପାରିବ ।

ଗାଲିଚାପାଇଁ ସୂତାର ଟାଣୀ, ସୂତାର ଭରଣୀ ଏବଂ ପଶମ ବା ଉଲ୍ (wool) ର କେଶର ଅତି ଉତ୍କୃଷ୍ଟ ହେବ । ଝୋଟର ଟାଣୀ, ସୂତାର ଭରଣୀ ଓ ଉଲ୍‌ର କେଶର ଦେଲେ ମଧ୍ୟ ମନ୍ଦ ହେବ ନାହିଁ । ଏଠାରେ ଉଲ ଅର୍ଥରେ ଆମ ଦେଶୀ ମେଣ୍ଢାଙ୍କ ଲୋମକୁ ଲକ୍ଷ୍ୟକରାଯାଇଅଛି । ସୂତାର ଟାଣୀ ସୂତାର ଭରଣୀ ଏବଂ ସୂତାର କେଶରରେ ମଧ୍ୟ ଅତି ସୁନ୍ଦର ଗାଲିଚା ବୁଣାହୋଇ ପାରିବ ।

ଝୋଟର ଟାଣୀ ଏବଂ ଝୋଟର ଭରଣୀରେ ମଧ୍ୟ ଗାଲିଚା ବୁଣାଯାଇ ପାରେ । ଝୋଟର ଭରଣୀ ଦେବାକୁ ହେଲେ ଭରଣୀ ନିମନ୍ତେ ଯେଉଁ ଝୋଟର ବାଣି ବ୍ୟବହାର କରିବ ତାହାକୁ ଅଧିକ ପାକଲ ନ କରି ନରମ କରି କାଟିବ । ପାକଲ କଡ଼ା ହେଲେ ସେ ବାଣି ଉତ୍ତମରୂପେ ଟାଣୀରେ ଭିଡ଼ି ହୋଇ ବସିବ ନାହିଁ, ତେଣୁ କେଶରଗୁଡ଼ିକ ଖସିଯିବାର ଆଶଙ୍କା ରହିବ ।

ଝୋଟର ଟାଣୀ ଝୋଟର ଭରଣୀ ଯାଇ ଭିନ୍ନ ଭିନ୍ନ ରଙ୍ଗରେ ଝୋଟକୁ ରଙ୍ଗାଇ ସେହି ଝୋଟର କେଶର ଦେଇ ଗାଲିଚା କରାଯାଇ ପାରିବ । ତାହା ଦେଖିବାକୁ ବେଶ୍ ସୁନ୍ଦର ହେବ । ମଟରଗାଡ଼ି ମାନଙ୍କରେ ପାଦ ରଖିବାପାଇଁ ଏହିପରି ପାଉଁପୋଛ ଗାଲିଚା ଅଳ୍ପ ମୂଲ୍ୟରେ କରାଯାଇ ପାରିବ ।

ଝୋଟ ସମ୍ବନ୍ଧରେ ଏ ପୁସ୍ତକର ତୃତୀୟ ଖଣ୍ଡରେ କେତେକ ବିଷୟ ଦିଆ ଯାଇଅଛି । ଏଠାରେ ଝୋଟରେ କେତେକ ଗୋଟି ବୁଣିବାର ପ୍ରଣାଳୀ ଦିଆଯାଉଅଛି । ଝୋଟ, ସୂତା, ପାଟ ଓ ପଶମ ପ୍ରଭୃତି ପଦାର୍ଥର ବୁଣିବାର ପ୍ରଣାଳୀ ସମାନ ।

ଓଡ଼ିଶାର କେତେକ ସ୍ଥାନରେ ଝୋଟର ପଟି ବୁଣା ହେଉଥିବା ବିଷୟ ଯାହା ପୂର୍ବେ ଉଲ୍ଲେଖ ହୋଇଅଛି, ତାହା ବୁଣିବାର ପ୍ରଣାଳୀ ଏଠାରେ ଦିଆଗଲା ।

---

## ଝୋଟର ପଟି

ଝୋଟର ପଟି ବୁଣିବାପାଇଁ ଝୋଟରେ ବାଣିଗୁଡ଼ିଏ ପ୍ରସ୍ତୁତ କରିବ । ଫିତା ବୁଣିବା ନିମନ୍ତେ ଏଥିପୂର୍ବେ ଯେଉଁ ପ୍ରଣାଳୀରେ ସୂତାର ଟାଣୀ ପ୍ରସ୍ତୁତ କରିବା ବିଷୟ ବର୍ଣ୍ଣିତ ହୋଇଅଛି ଠିକ୍ ସେହି ପ୍ରଣାଳୀରେ ଝୋଟର ପଟି ନିମନ୍ତେ ଝୋଟର ବାଣିରେ ଗୋଟିଏ ଟାଣୀ ପ୍ରସ୍ତୁତ କରିବ । ଟାଣୀର ଦୁଇ ମୁଣ୍ଡରେ ସେହିପରି ଦୁଇଗୋଟି ଫାନ୍ଦ ରଖିବ । ଦୁଇ ଫାନ୍ଦକୁ ଦୁଇଖଣ୍ଡି ଡ଼ୋରରେ ବାନ୍ଧି ଟାଣୀ ଉଠାଇ ଆଣିବ ।



୧ ନମ୍ବର ଚିତ୍ର

ଝୋଟର ପଟି ବୁଣିବା ପାଇଁ ଯେଉଁ ସବୁ ଉପକରଣ ବ୍ୟବହୃତ ହୁଏ, ତାହା ନିମ୍ନରେ ଦିଆଗଲା:—

(୧) ଘୋଡ଼ିଆ—୧ ନମ୍ବର ଚିତ୍ର ଦେଖ । ଏହା ଉପରେ ଟାଣୀ ରଖାଯାଇ ପଟି ବୁଣିବାକୁ ହୁଏ ।

(୨) ହତା—୨ ନମ୍ବର ଚିତ୍ର ଦେଖ । ଭରଣୀ ଡୋର ବୁଣି ଏହାଦ୍ୱାରା ପିଟିବାକୁ ହୁଏ ।

(୩) ନଳି—୩ ନମ୍ବର ଚିତ୍ର ଦେଖ । ଏହା ଖଣ୍ଡିଏ ମୋଟା ବାଉଁଶର ନଳୀ । ଏହା ଫାନ୍ଦ ଉଠାଇବା ପାଇଁ ବ୍ୟବହୃତ ହୁଏ ।

(୪) ଦଣ୍ଡା—୪ ନମ୍ବର ଚିତ୍ର ଦେଖ । ତନ୍ତରେ ଯେପରି ବିମ୍ (beam) ବା ଦଣ୍ଡା ଲଗେ ଏଥିରେ ଏହି ଦଣ୍ଡାଟି ଗୋଟିଏ ବିମର କାର୍ଯ୍ୟ କରେ । ଟାଣୀକୁ ଦୁଇ ପ୍ରାନ୍ତରେ ଏହିପରି ଦୁଇଟି ଦଣ୍ଡାରେ ଲଗାଇବାକୁ ପଡ଼େ ।

(୫) ତନ୍ତର ଶଅଡ଼ ବଟା ବା ଶଅଡ଼ ପଠା ପରି ଏହା ଖଣ୍ଡିଏ ଛୋଟ ଶଅଡ ବଟା ।

୨ ନମ୍ବର ଚିତ୍ର



୩ ନମ୍ବର ଚିତ୍ର



୪ ନମ୍ବର ଚିତ୍ର



(୬) ବଅଡାଙ୍ଗି—ଏଥିରେ ବଅ ବନ୍ଧାଯାଏ ।

(୭) କଣ୍ଡାକାଠି—ଏଥିରେ ଭରଣୀ ଡୋର ଗୁଡ଼ାଯାଏ ଏବଂ ଏହା କଣ୍ଡାର କାର୍ଯ୍ୟ କରେ ।

ଠାଣୀର ଦୁଇ ମୁଣ୍ଡରେ ଦଣ୍ଡା ୨ ଖଣ୍ଡି ଲଗାଇ ଦଣ୍ଡା ଦୁଇଟିରେ ଡୋର ବାନ୍ଧି ତାହାକୁ ଉତ୍ତମରୂପେ ଭିଡ଼ି ଗୋଟିଏ ଗୋଟିଏ ଖୁଣ୍ଟରେ ବାନ୍ଧିଦେବ । ପାର୍ଶ୍ୱର ୫ ନମ୍ବର ଚିତ୍ର ଦେଖ । ଠାଣୀ



୫ ନମ୍ବର ଚିତ୍ର

ପ୍ରସ୍ତୁତ କଲାବେଳେ ତହିଁରେ ଯେଉଁ ଫାନ୍ଦ ଦୁଇଟି ରଖାଯାଇଥିଲା, ତହିଁରେ ଦୁଇଖଣ୍ଡି ଦାନ୍ତିଆ କାଠି ବା ବଟା ଲଗାଇଦେଇ ଡୋର ଦୁଇଖଣ୍ଡି ପିଟାଇ ନେବ । ଏଥିପୂର୍ବେ ବଅ ବାନ୍ଧିବାର ଯେଉଁ ପ୍ରଣାଳୀ ବର୍ଣ୍ଣିତ ହୋଇଅଛି, ଠିକ୍ ସେହି ପ୍ରଣାଳୀରେ ପ୍ରଥମ ଫାନ୍ଦଟିରୁ ଗୋଟିଏ ସାଧା ବଅ ବଅଡାଙ୍ଗିରେ ବାନ୍ଧିଦେବ । ଦ୍ୱିତୀୟ ଫାନ୍ଦଟିରେ ବାଉଁଶର ନଳୀଟି ଲଗାଇଦେବ । ବଟା ବା ଦାନ୍ତିଆ କାଠି ଦୁଇଖଣ୍ଡି ବାହାର କରି ନେବ ।

ଠାଣୀତଳେ ଘୋଡ଼ଅଟି ଲଗାଇ ଏଥର ବୁଣିବାକୁ ଆରମ୍ଭ କରିବ । କଣ୍ଡାକାଠିରେ ଭରଣୀ ନିମନ୍ତେ ଯେଉଁ ରଙ୍ଗର ଡୋର ବୁଣିବ ସେହି ରଙ୍ଗର ଡୋର ଲମ୍ବ ଭାବରେ ଗୁଡ଼ାଇ ରଖିଥିବ । ବଅଡାଙ୍ଗଟି ଧରି ଉଠାଇ ଦେଲେ ଠାଣୀରୁ ଗୋଟିଏ ଫାନ୍ଦ ଉଠିଯିବ । ତହିଁରେ ଥରେ ଭରଣୀ ଡୋର ବୁଣି ହତାଦ୍ୱାରା ଉତ୍ତମରୂପେ ପିଟିଦେବ । ତାପରେ ନଳୀଟି ଠାଣିଆଣିଲେ ଠାଣୀର

ଅଉ ଗୋଟିଏ ଫାନ୍ଦ ଆପେ ଉଠିଯିବ । ତହିଁରେ ଆଉଥରେ କଣ୍ଢାକାଠିଦ୍ୱାରା ଭରଣୀ ଡୋର ବୁଣିବ ଏବଂ ପୁନଶ୍ଚ ହତାଦ୍ୱାରା ଉତ୍ତମରୂପେ ପିଟିଦେବ । ଏହାପରେ ଥରେ ବଅଡାଙ୍ଗିକୁ ଉଠାଇ ଓ ଆଉଥରେ କଳାଟି ପାଖକୁ ଟାଣିଆଣି ପ୍ରତିଥର ଫାନ୍ଦ ଉଠିଲେ ଥରେ ଲେଖାଏଁ ବାଆଁରୁ ଓ ଡାହାଣରୁ ଭରଣୀ ଡୋର ବୁଣି କ୍ରମାଗତ ଆଗକୁ ବୁଣିଯିବ । ଯେତେ ଆଗକୁ ବୁଣି ଯାଉଥିବ, ଧୋଡ଼ିଅକୁ ତେତେ ଆଗକୁ ମଡ଼ାଇ ନେଉଥିବ ।

ଏହିପ୍ରକାର ପଟି ଦୁଇଗୋଟି ତିନିଗୋଟି ବା ତହୁଁରୁ ଅଧିକ ଗୋଟି ବୁଣି ସେଗୁଡ଼ିକୁ ପରସ୍ପର ଯୋଡ଼ି ସିଲାଇ କରିଦେଲେ ଅଧିକ ଚଉଡ଼ାର ଗୋଟିଏ ଅଖାପଟି ହେବ । ଏପ୍ରକାର ପଟି ଖୁବ ଶକ୍ତ ହୁଏ । କେବଳ ମଝିରେ ଗୋଟିଏ ଗୋଟିଏ ସିଲାଇ ହୋଇଥିବାରୁ ଏହା ଅନେକଙ୍କର ଆଖିରୋଚକ ହୁଏ ନାହିଁ । ତନ୍ତଦ୍ୱାରା ବୁଣିଲେ ଏକାବେଳକେ ଅଧିକ ଚଉଡ଼ାର ବୁଣାଯାଇ ପାରେ । ପୁଣି ଉପରଉକ୍ତ ପ୍ରଣାଳୀରେ ପଟିଗୁଡ଼ିକ କେବଳ ସରଳ ବୁଣା ପ୍ରଣାଳୀରେ ବୁଣାଯାଏ । ତହିଁରେ ଅନ୍ୟ କୌଣସି ଚିତ୍ର ଆଦ କରାଯାଇ ପାରେ ନାହିଁ । ତନ୍ତରେ ବୁଣିଲେ ଟୁଇଲ୍, ଡାଇମଣ୍ଡ ପ୍ରଭୃତି ନାନା ପ୍ରଣାଳୀରେ ଏହା ବୁଣାଯାଇ ପାରିବ ଏବଂ ଦେଖିବାକୁ ସୁନ୍ଦର ହେବ ।

## ଖୋଟ ବାଣିର ବ୍ୟାଗ (Bag)

ଖୋଟବାଣିକୁ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗାଇ ସେହି ବାଣିରେ ନାନା ପ୍ରକାର ବ୍ୟାଗ୍ ବୁଣାଯାଇ ପାରେ । ଏହି ବ୍ୟାଗ ତନ୍ତରେ ବୁଣାଯାଇ ପାରିବ ଏବଂ ଛୋଟ ଛୋଟ କାଠର ଫରମା କରି ତହିଁରେ ଏକ ପରସ୍ତ ଟାଣୀ ଖଞ୍ଜି ଭରଣୀ ଡୋରକୁ ଗୋଟିଏ ଡାଙ୍ଗଣରେ ଲଗାଇ ଟାଣୀର ଡୋରଗୁଡ଼ିକ ଟୁଇଲ ପ୍ରଣାଳୀରେ ଅଥବା ଡାଇମଣ୍ଡ ପ୍ରଣାଳୀରେ ଯେତେଗୋଟି ଟାଣୀ ତଳକୁ ଓ ଯେତେଗୋଟି ଉପରକୁ ଦେବାର ତାହା ଦେଇ ବୁଣିଗଲେ ସୁନ୍ଦର ବ୍ୟାଗ୍ ଗୋଟିଏ ଗୋଟିଏ ହେବ । ତାଳପତ୍ର ପଟି ବୁଣିବାରେ ଟୁଇଲ୍ ଓ ଡାଇମଣ୍ଡ ଚିତ୍ର କରିବାପାଇଁ ଯେତେଗୋଟି ପତ୍ର ଉପରକୁ ଉଠାଇବାର ବା ତଳକୁ ପକାଇବାର ବର୍ଣ୍ଣିତ ଅଛି ଏଥିପାଇଁ ମଧ୍ୟ ଠିକ୍ ତେତେ ଗୋଟି ଖିଅ ତଳକୁ ବା ଉପରକୁ ଦେଇ ବୁଣିଲେ ଟୁଇଲ୍ ବା ଡାଇମଣ୍ଡ୍ ଚିତ୍ର ଉଠିବ । ୬ ନମ୍ବର ଚିତ୍ରରେ ଗୋଟିଏ ଟୁଇଲ୍ ଓ ଗୋଟିଏ ଡାଇମଣ୍ଡ ବୁଣା ବ୍ୟାଗ୍ ଦେଖାଇ ଦିଆଯାଇଅଛି ।



୬ ମ୍ବର ଚିତ୍ର

## ଭିନ୍ନ ଭିନ୍ନ ବୁଣିବା ପ୍ରଣାଳୀ

ସୂତା, ପାଟ, ଟସର, ଝୋଟ ବା ପଶମ ଯେ କୌଣସି ପଦାର୍ଥ ତନ୍ତଦ୍ୱାରା ବୁଣାଯାଏ ସେ ସବୁ ବୁଣିବାର ପ୍ରଣାଳୀରେ କୌଣସି ପ୍ରଭେଦ ନାହିଁ । ଭିନ୍ନ ଭିନ୍ନ ପଦାର୍ଥ ପାଇଁ ଭିନ୍ନ ଭିନ୍ନ ପାନିଆ ଆବଶ୍ୟକ । ପାଟ ଓ ଟସର ଅଧିକ ସରୁ, ତେଣୁ ସେଥି ନିମନ୍ତେ ଖୁବ୍ ଘନ ପାନିଆ ଆବଶ୍ୟକ । ଝୋଟର ବାଣିଗୁଡ଼ିକ ମୋଟା, ତେଣୁ ସେଥିନିମନ୍ତେ ଅଧିକ ପାତଳ ପାନିଆ ଲୋଡ଼ା ହୁଏ ଭିନ୍ନ ଭିନ୍ନ ନମ୍ବରର ସୂତା ନିମନ୍ତେ ଭିନ୍ନ ଭିନ୍ନ ନମ୍ବରର ପାନିଆ ଲୋଡ଼ା ହୁଏ । ଯେଉଁ ଯେଉଁ ନମ୍ବର ସୂତା ଯେଉଁ ଯେଉଁ ନମ୍ବର ପାନିଆରେ ବୁଣାଯାଇପାରିବ ତାହା ଏଥି ପୂର୍ବେ ବର୍ଣ୍ଣିତ ହୋଇଅଛି । ପଶମ ନିମନ୍ତେ ମଧ୍ୟ ଅଧିକ ଘନ ପାନିଆ ଲୋଡ଼ା ହୁଏ ନାହିଁ । ଝୋଟ ନିମନ୍ତେ ୬ନମ୍ବର ଠାରୁ ୧୨ ନମ୍ବର ପାନିଆ ହେଲେ ଯଥେଷ୍ଟ ହେବ । ଝୋଟର ପାନିଆଗୁଡ଼ିକ ଲୁହା କାଠିର ହେବା ଆବଶ୍ୟକ ।

ତନ୍ତଦ୍ୱାରା ସାଧା ବୁଣା ଅର୍ଥାତ୍ ଗୋଟିଏ ଖିଅ ଉପରକୁ ଓ ଗୋଟିଏ ଖିଅ ତଳକୁ ଦେଇ ବୁଣିବାର ପ୍ରଣାଳୀ ଫିତା, ଗାଲିଚା, ସତରଞ୍ଜି ପ୍ରଭୃତି ବୁଣିବା ପ୍ରସଙ୍ଗରେ ଯଥେଷ୍ଟ ଦେଖାଇ ଦିଆଯାଇଅଛି । ତନ୍ତଦ୍ୱାରା ସେହିପରି ବୁଣିବାକୁ ହେଲେ କେବଳ ଅଧିକ ଚୌଡ଼ାର ଟାଣୀ ପ୍ରସ୍ତୁତ କରି ତାହାକୁ ବିମ୍‌ରେ ଚଢ଼ାଇ ଦେବାକୁ ହେବ । ଫିତାପରି ଦୁଇଗୋଟା ବଅ ବାନ୍ଧିବାକୁ ପଡ଼ିବ । ବଅ ଡାଙ୍ଗିର ଡୋର ଉପରକୁ ନେଇ ତନ୍ତ ଉପରେ ନାଚୁଣୀରେ ବାନ୍ଧିବ । ତଳର ଡୋର ବଅ ଡାଙ୍ଗିର କମ୍ବରୁ ନେଇ ଟିପୁଣୀ ଦୁଇଟାରେ ବାନ୍ଧିବାକୁ ପଡ଼ିବ । ଟାଣୀ ସୂତାଗୁଡ଼ିକ ଦୁଇଟି ଲେଖାଏଁ ପାନିଆର ଗୋଟିଏ ଗୋଟିଏ ଘରେ ଗୁନ୍ଥି ପ୍ରତିଥର ଗୋଟିଏ ଲେଖାଏଁ ଖିଅ ଭରଣୀ ବୁଣି ପାନିଆଦ୍ୱାରା ପିଟି ବସାଇଦେବାକୁ ହୁଏ ।

ଝୋଟ ହେଉ, ପାଟ ହେଉ, ଟସର ହେଉ ବା ଉଲ୍ ହେଉ ବୁଣିବାର ପ୍ରଣାଳୀ ସବୁ ପଦାର୍ଥରେ ସମାନ । ତେଣୁ ସରଳ ବୁଣାର ପ୍ରଣାଳୀ ଆଉ ଅଧିକ ବିଶଦ୍ ଭାବେ ଏଠାରେ ବୁଝାଇବା ଅନାବଶ୍ୟକ ।

## ଟୁଇଲ୍ ବୁଣିବା ପ୍ରଣାଳୀ

ଟୁଇଲ୍ ବୁଣିବା ନିମନ୍ତେ ବଅ ବାନ୍ଧିବା ଟିପୁଣୀରେ ଏବଂ ନାଚୁଣୀରେ ଡୋର ଖଞ୍ଜିବାରେ ବିଶେଷତ୍ୱ ଥିବାରୁ ତାହା ବିଶଦ୍‌ଭାବେ ଦିଆଗଲା ।

ପୂର୍ବରୁ ତାଲପତ୍ର ଚଟେଇଠାରୁ ଆରମ୍ଭ କରି ନାନା ସ୍ଥାନରେ ଦେଖାଇ ଦିଆଯାଇଅଛି ଯେ, ଟୁଇଲ ବୁଣାରେ ଟାଣୀ ଦୁଇଗୋଟି ଲେଖାଏଁ ଉପରକୁ ଉଠାଇ ଏବଂ ଦୁଇଗୋଟି ଲେଖାଏଁ ତଳକୁ ପକାଇ ବୁଣିବାକୁ ପଡ଼େ ।

ତନ୍ତରେ ବୁଣିବାକୁ ଗଲେ ମଧ ଟୁଇଲ ବୁଣାରେ ଠିକ ସେହିପରି ଟାଣୀରୁ ଦୁଇଟି ଖିଅ ଉପରକୁ ଉଠାଇବାକୁ ହେବ ଏବଂ ଦୁଇଟି ଖିଅ ତଳକୁ ପକାଇବାକୁ ହେବ । ତେଣୁ ବଅରେ ଟାଣୀ ସୁତାଗୁଡ଼ିକ ଯେପରି ଖଞ୍ଜିଲେ ଦୁଇଟି ଖିଅ ଉପରକୁ ଉଠିବ ଏବଂ ଦୁଇଟି ଖିଅ ତଳକୁ ପଡ଼ିବ ସେହିପରି ଖଞ୍ଜିବାକୁ ପଡ଼ିବ ।

ଏପର୍ଯ୍ୟନ୍ତ ଯେତେ ପ୍ରକାର ବଅ ବାନ୍ଧିବା ପ୍ରଣାଲୀ ଉଲ୍ଲେଖ ହୋଇଅଛି ତାହା ଟାଣୀ ସୂତାକୁ ନିଜ ହାତରେ ବଅ ବାନ୍ଧିବାର ପ୍ରଣାଳୀ ଦେଖାଇ ଦିଆଯାଇଅଛି, ଏଥିରୁ ମଧ ଠିକ ସେହିପରି ବଅ ବାନ୍ଧିପାରିବ । ମାତ୍ର ଅନେକଗୁଡ଼ିଏ ବଅ ବାନ୍ଧିବାକୁ ପଡ଼ିବ । ବନ୍ଧା ବଅର ବ୍ୟବହାର ଦ୍ୱାରା ଏଠାରେ ଏହି ପ୍ରଣାଳୀ ବର୍ଣ୍ଣିତ ହେଲା । ବନ୍ଧାବଅ ତିଆରି କରିବାର ପ୍ରଣାଳୀ କମ୍ବଳ ବୁଣା ଅଧ୍ୟାୟରେ ବର୍ଣ୍ଣିତ ହେବ ।

ବନ୍ଧା ବଅ ସୂତାଦ୍ୱାରା ଗୋଟି ଗୋଟି କରି ବନ୍ଧାହୋଇ ରଖାଯାଇଥାଏ ଓ ବିକି ହୁଏ । ଠିକ ସେହିପରି ତାରର ବଅ ମଧ୍ୟ ତିଆରି ହୋଇ ବିକି ହୁଏ । ବନ୍ଧା ବଅ ଏବଂ ତାର ବଅର ଠିକ ମଧ୍ୟଭାଗରେ ଗୋଟିଏ ଗୋଟିଏ ଘର ରଖାଯାଇଥାଏ, ତାହାକୁ କହନ୍ତି ଆଖି । ସେହି 'ଆଖି' ମଧ୍ୟରେ ଟାଣୀ ସୂତାଗୁଡ଼ିକୁ ଗଲାଇ ଦେବାକୁ ପଡ଼େ । ଏହିପରି ଗଲାଇବା କାରଣ ଗୋଟିଏ ଅଙ୍କୁଶା ବା ହୁକ୍ ବ୍ୟବହାର କରିବାକୁ ହୁଏ । ସେହି ଅଙ୍କୁଶାଦ୍ୱାରା ଟାଣୀର ଖିଅକୁ ବଅର "ଆଖି" ମଧ୍ୟ ଦେଇ ଟାଣି ଆଣିବାକୁ ପଡ଼େ । ୧ ନମ୍ବର ଚିତ୍ର ଦେଖ ।



୧ ନମ୍ବର ଚିତ୍ର

ଟୁଇଲ୍ ବୁଣିବା ନିମନ୍ତେ ଚାରିଗୋଟି ବଅ ବାନ୍ଧିବା ଆବଶ୍ୟକ । ତେଣୁ ଟାଣୀ ସୂତା-ଗୁଡ଼ିକୁ ଚାରିଗୋଟି କରି ଭାଗ କରି ନେବାକୁ ହେବ । ବଅ ଚାରିଗୋଟି ମଧ୍ୟରୁ ପ୍ରତି ବଅକୁ ଗୋଟିଏ ଗୋଟିଏ ଶ୍ରେଣୀ ବୋଲି ଧରିବାକୁ ହେବ ।

ଟାଣୀ ସୁତା ବଅରେ ଗୁନ୍ଥିବାବେଳେ ଟାଣୀ ସୂତା ଯାହା ଭାଗ କରାଯାଇଅଛି ସେହି ଭାଗ ମଧ୍ୟରୁ ପ୍ରତି ଭାଗର—

| | | | | | |
|---|---|---|---|---|---|
| ୧ମ | ଖିଅଟି | ୧ମ | ଶ୍ରେଣୀ | ବଅରେ | ଗୁନ୍ଥିବ । |
| ୨ୟ | ” | ୨ୟ | ” | ” | ” |
| ୩ୟ | ” | ୩ୟ | ” | ” | ” |
| ୪ର୍ଥ | ” | ୪ର୍ଥ | ” | ” | ” |

ଏହି କ୍ରମରେ ବଅର ସମସ୍ତ ସୂତା ଗୁଡ଼ିକ ଏହି ୪ଶ୍ରେଣୀର ବଅରେ ଗୁନ୍ଥି ଦେବ ।



୨ ନମ୍ବର



୩ ନମ୍ବର ଚିତ୍ର

ତନ୍ତର ଉପରେ ନାଚୁଣୀ ଏବଂ ତଳେ ଟିପୁଣୀ ଥାଏ । ବଅ ଶ୍ରେଣୀରୁ ଡୋର ବନ୍ଧା ହୋଇ ଉପର ପାଖରେ ଡୋର ଉପରେ ନାଚୁଣୀ ସଙ୍ଗେ ବାନ୍ଧି ସଂଯୁକ୍ତ କରାଯାଏ ଏବଂ ତଳରୁ ଡୋର ବନ୍ଧାଯାଇ ତଳର ଟିପୁଣୀ ସଙ୍ଗେ ଖଞ୍ଜାଯାଏ । ଟିପୁଣୀକୁ ଗୋଡରେ ମାଡ଼ି ଦେଲେ ଯେଉଁ ବଅରେ ଯେଉଁ ସୂତା-ଗୁଡ଼ିକ ଖଞ୍ଜା ହୋଇଥାଏ ସେଗୁଡ଼ିକ ତଳକୁ ଦବିଯାଏ । ଏବଂ ଅନ୍ୟଗୁଡ଼ିକ ନାଚୁଣୀରେ ବନ୍ଧା ଥାଇ ତାହା ଉପରକୁ ଉଠିଯାଏ । ତେଣୁ ଟିପୁଣୀ ଓ ନାଚୁଣୀ ମଧ୍ୟରେ ଟାଣୀ ସୂତାଗୁଡ଼ିକୁ ତଳକୁ ପକାଇବା ଏବଂ ଉପରକୁ ଉଠାଇବା ସମ୍ବନ୍ଧେ ଘନିଷ୍ଠ ସମ୍ପର୍କ ଅଛି । ନାଚୁଣୀ ନାନା ପ୍ରକାରର ବ୍ୟବହୃତ ହୁଏ । ତନ୍ତ ଉପରେ ଖଣ୍ଡିଏ ଖଣ୍ଡିଏ ଆଡ଼ ପକାଇ ନାଚୁଣୀଗୁଡ଼ିକ ତହିଁରୁ ଝୁଲାଇ ଦେବାକୁ ପଡ଼େ । ନାଚୁଣୀ ପରିବର୍ତ୍ତିରେ କେତେକ ସ୍ଥଳରେ ବେଲୁର




୪ ନମ୍ବର ଚିତ୍ର

ଝୁଲାଇ ତହିଁରୁ ଖଣ୍ଡିଏ ଖଣ୍ଡିଏ ଡୋର (୪ ନମ୍ବର ଚିତ୍ର ପରି) ଗୁଡାଇ ଦେଲେ ତଦ୍ଦ୍ୱାରା ନାଚୁଣୀର କାର୍ଯ୍ୟ ସାଧିତ ହୋଇଥାଏ । ୨।୩ ଓ ୫ ନମ୍ବର ଚିତ୍ରରେ ନାଚୁଣୀ ଓ ୪ ନମ୍ବର ଚିତ୍ରରେ ଗୋଟିଏ ରୋଲରର ଚିତ୍ର ଦିଆଗଲା ।

ଭିନ୍ନ ଭିନ୍ନ ପ୍ରକାରର ବୁଣିବା ନିମନ୍ତେ ବଅ ଶ୍ରେଣୀରୁ ଯେଉଁ ଡୋର ନାଚୁଣୀ ଓ ଟିପ୍ପଣୀ ସଙ୍ଗେ ସଂଯୁକ୍ତ କରାଯାଏ ତହିଁରେ ଜୋଡ଼ା ହେବା ଅନୁସାରେ ପ୍ରଭେଦ ଦେଖିବାକୁ ପଡ଼େ ।

ଟୁଇଲ ବୁଣିବା ନିମନ୍ତେ ଏଠାରେ ଉପରେ ଗୁରସେଟ୍ ଅର୍ଥାତ୍ ପ୍ରତି ସେଟରେ ୪ ଗୋଟି ଲେଖାଏଁ ୮ ଗୋଟି ନାଚୁଣୀ ଉପରେ ଖଞ୍ଜା ହୋଇଅଛି । ନିମ୍ନରେ ସାଧାରଣ ୪ ଗୋଟି ଟିପ୍ପଣୀ ଏବଂ ୫ ନମ୍ବର ଚିତ୍ରରେ ସେହି ଟିପ୍ପଣୀର ଉପରକୁ ବାମ ପାର୍ଶ୍ୱରୁ ଅଉ ୪ ଗୋଟି ଟିପ୍ପଣୀ ଏରୂପ ୮ଗୋଟି ଟିପ୍ପଣୀ ଖଞ୍ଜା ହୋଇଅଛି ।



୫ ନମ୍ବର ଚିତ୍ର

୧ମ, ୨ୟ, ୩ୟ ଓ ୪ର୍ଥ ବଅ ଗୃର ଶ୍ରେଣୀର ପ୍ରତି ଦୁଇ ପ୍ରାନ୍ତରୁ ଦୁଇଟି ଲେଖାଏଁ ୮ ଗୋଟି ଡୋର ନେଇ ଉପରେ ୮ଗୋଟି ନାଚୁଣୀର ବାହାରପାଖ ପ୍ରାନ୍ତ ମାନଙ୍କରେ ସରଳଭାବେ ଯଥାକ୍ରମେ ଲଗାଇ ବାନ୍ଧି ଦେବ । ଅର୍ଥାତ ୧ମ ବଅ ଶ୍ରେଣୀର ବାମ ପ୍ରାନ୍ତରୁ ଡୋର ଖଣ୍ଡିଏ ନେଇ ଉପରେ ବାମ ପାର୍ଶ୍ବର ଗୃରଗୋଟି ନାଚୁଣୀ ମଧ୍ୟରୁ ପ୍ରଥମ ନାଚୁଣୀର ବାମ ପ୍ରାନ୍ତରେ ବାନ୍ଧିବ ଏବଂ ସେହି ୧ମ ବଅ ଶ୍ରେଣୀର ଡାହାଣ ପ୍ରାନ୍ତରୁ ଖଣ୍ଡିଏ ଡୋର ନେଇ ଉପରେ ଡାହାଣ ପାର୍ଶ୍ବରେ ଥିବା ୪ଗୋଟି ନାଚୁଣୀ ମଧ୍ୟରୁ ପ୍ରଥମ ନାଚୁଣୀର ଡାହାଣ ପ୍ରାନ୍ତରେ ବାନ୍ଧିଦେବ । ସେହିପରି ୨ୟ, ୩ୟ, ଓ ୪ର୍ଥ ବଅ ଶ୍ରେଣୀ ମାନଙ୍କର ଡୋରଗୁଡ଼ିକ ନେଇ ଉପରେ ୨ୟ, ୩ୟ ଓ ୪ର୍ଥ ନାଚୁଣୀମାନଙ୍କର ପ୍ରାନ୍ତମାନଙ୍କରେ ସିଧା ବାନ୍ଧିଦେବ ।

ପୁନଶ୍ଚ ପ୍ରତି ବଅ ଶ୍ରେଣୀର ମଧ୍ୟଭାଗରେ ଚିତ୍ରରେ ଦେଖାହେବା ପରି ଦୁଇଟି ଲେଖାଏଁ ୮ ଗୋଟି ଡୋର ବନ୍ଧାଯିବ ।

ଏହି ୮ ଗୋଟି ଡୋର ମଧ୍ୟରୁ ବାଆଁ ପାଖରୁ ୪ ଗୋଟି ଡୋର ବାଆଁ ପାଖର ୪ଗୋଟି ନାଚୁଣୀରେ—

| | | | |
|---|---|---|---|
| ୧ମ | ବଅର ଡୋର | ୩ୟ | ନାଚୁଣୀରେ |
| ୨ୟ | ,, ,, | ୪ର୍ଥ | ,, |
| ୩ୟ | ,, ,, | ୧ମ | ,, |
| ୪ର୍ଥ | ,, ,, | ୨ୟ | ,, |

ଏବଂ ଡାହାଣ ପାଖର ୪ଗୋଟି ଡୋର ଡାହାଣ ପାଖ ନାଚୁଣୀରେ—

| | | | |
|---|---|---|---|
| ୧ମ | ବଅର ଡୋର | ୩ୟ | ନାଚୁଣୀରେ |
| ୨ୟ | ,, ,, | ୪ର୍ଥ | ,, |
| ୩ୟ | ,, ,, | ୧ମ | ,, |
| ୪ର୍ଥ | ,, ,, | ୨ୟ | ,, ବାନ୍ଧିଦେବ । |

କ୍ରମରେ ବଅ ୪ ଶ୍ରେଣୀରୁ ଗୃର ଗୋଟି ଡୋର ଯାଇଁ ଟିପ୍ପଣୀ ଦୁଇସେଟ୍ ମଧ୍ୟରୁ ଉପର ସେଟ୍ ଅର୍ଥାତ୍ ବାମଦଗରୁ ଲାଗିଥିବା ୪ ଗୋଟି ଟିପ୍ପଣୀରେ ଯଥାକ୍ରମେ ବାନ୍ଧିଦେବ । ଅର୍ଥାତ ୧ମ ବଅର ଡୋର ୧ମ ଟିପ୍ପଣୀରେ, ୨ୟ ବଅର ଡୋର ୨ୟ ଟିପ୍ପଣୀରେ, ୩ୟ ବଅର ଡୋର ୩ୟ ଟିପ୍ପଣୀରେ ଏବଂ ୪ର୍ଥ ବଅର ଡୋର ୪ର୍ଥ ଟିପ୍ପଣୀରେ ସରଳ ଭାବରେ ବାନ୍ଧିଦେବ ।

ପୁଣି ଏହି ଉପର ଗୃରଗୋଟି ଟିପ୍ପଣୀରେ ପ୍ରତ୍ୟେକରେ ଦୁଇଟି ଲେଖାଏଁ ଡୋର ବାନ୍ଧି ଡୋରଗୁଡ଼ିକ ଅନ୍ୟ ଗୃରଗୋଟି ଟିପ୍ପଣୀରେ ନିମ୍ନଲିଖିତରୂପେ ବାନ୍ଧିଦେବ ।

ଉପରର ୪ଗୋଟି ଟିପ୍ପଣୀ ମଧ୍ୟରୁ ପ୍ରଥମ ଟିପ୍ପଣୀରୁ ୨ ଗୋଟି ଡୋର ନେଇ ତହିଁମଧ୍ୟରୁ ଗୋଟିଏ ଡୋର ନମ୍ବ ଗୃରଗୋଟି ଟିପ୍ପଣୀର ପ୍ରଥମ ଟିପ୍ପଣୀରେ ଆଉ ଗୋଟିଏ ଡୋର ଚତୁର୍ଥ ଟୀପ୍ପଣୀରେ ବାନ୍ଧ ଦେବ ।

ଉପର ଟିପ୍ପଣୀ ମଧ୍ୟରୁ ଦ୍ୱିତୀୟ ଟିପ୍ପଣୀର ଡୋର ଦୁଇଟି ନେଇ ତହିଁ ମଧ୍ୟରୁ ଗୋଟିଏ ଡୋର ନମ୍ବ ଟିପ୍ପଣୀର ପ୍ରଥମଟିରେ ଏବଂ ଅନ୍ୟ ଡୋରଟି ତୃତୀୟ ଟିପ୍ପଣୀରେ ବାନ୍ଧିବ ।

ଉପର ଟିପ୍ପଣୀ ମଧ୍ୟରୁ ତୃତୀୟ ଟିପ୍ପଣୀର ୨ଗୋଟିଏ ଡୋର ନେଇ ତହିଁମଧ୍ୟରୁ ଗୋଟିଏ ଡୋର ନମ୍ବ ଟିପ୍ପଣୀର ଦ୍ୱିତୀୟ ଟିପ୍ପଣୀରେ ଏବଂ ଆଉ ଗୋଟିଏ ଡୋର ତୃତୀୟ ଟିପ୍ପଣୀରେ ବାନ୍ଧ ଦେବ ।

ଉପର ଟିପ୍ପଣୀ ମଧ୍ୟରୁ ଚତୁର୍ଥ ଟିପ୍ପଣୀ ଡୋର ଦୁଇଟି ନେଇ ତହିଁ ମଧ୍ୟରୁ ଗୋଟିଏ ଡୋର ନମ୍ବ ଟିପ୍ପଣୀର ଦ୍ୱିତୀୟ ଟିପ୍ପଣୀରେ ଏବଂ ଅନ୍ୟଟି ଚତୁର୍ଥ ଟିପ୍ପଣୀରେ ବାନ୍ଧିବ ।

ବୁଣିବା ସମୟରେ ନମ୍ବର ଟିପଣୀ ଗୁଡ଼ିକ ଉପରେ ପାଦ ରଖି ଗୋଟିଏ ଲେଖାଏଁ ଟିପ୍ପଣୀକୁ ନମ୍ବକୁ ଟିପିଦେଲେ ଯେଉଁ ଫାନ୍ଦ ଉଠୁଥିବ ତହିଁରେ ଥରେ ଲେଖାଏଁ ଭରଣୀ ସୂତା ବୁଣି ପାନଅଦ୍ୱାରା ପିଟିବାକୁ ପଡ଼ିବ । ବୁଣିବା ପୂର୍ବରୁ ଠାଣୀ ସୂତାଗୁଡ଼ିକର ଏକପ୍ରାନ୍ତ କାଟି ଗୋଟି ଗୋଟି କରି ପାନଅର ପ୍ରତି ଘରେ ଦୁଇଟି ଲେଖାଏଁ ଖିଅ ପୁରାଇ ତାହା ଚିତ୍ର ଲିଖିତ-ମତେ ଗୋଛ ଗୋଛକରି ଖଣ୍ଡିଏ କାଠିରେ ଗଣ୍ଠିଦେଇ ବାନ୍ଧିବ । ଏବଂ କାଠି ଖଣ୍ଡିକ ବେଲଟର ଘାଇ ମଧ୍ୟରେ ଦେଇ ଖଣ୍ଡିଏ ଶକ୍ତ ଡୋରଦ୍ୱାରା ଗୁଡ଼ାଇ ବାନ୍ଧିଦେବ; ଦେଖିବ ଯେପରି ଠାଣୀର ସମସ୍ତ ଖିଅଗୁଡ଼ିକ ସମାନ ଭାବରେ ଭିଡ଼ ହୋଇ ରହିବ । କେହି ଢିଲା ଥିଲେ ତାକୁ ଫିଟାଇ ଭିଡ଼ିବାନ୍ଧି ସିଧା କରିଦେବ; ତ ପରେ ବୁଣିବାକୁ ଆରମ୍ଭ କରିବ ।



୬ ନମ୍ବର ଚିତ୍ର



୭ ନମ୍ବର ଚିତ୍ର

ଟୁଇଲ ବୁଣିବାପାଇଁ ନମ୍ବରେ ଦୁଇସେଟ ଟିପ୍ପଣୀରେ ଡୋର ବନ୍ଧା ଥିବାରୁ କେବଳ ଗୋଟିଏ ସେଟ ଟିପ୍ପଣୀରେ ଅର୍ଥାତ୍ ନମ୍ବ ଟିପ୍ପଣୀରେ ପାଦ ରଖି ନମ୍ବଲିଖିତ କ୍ରମରେ ବାମ ପାଖରୁ ଆରମ୍ଭ କରି ସେଗୁଡ଼ିକୁ ଟିପି ବୁଣିବାକୁ ପଡ଼ିବ । ଯଥା—

୧, ୩, ୨, ୪, ଅର୍ଥାତ୍ ପ୍ରଥମେ ବାମ ପାଖରୁ ୧ମ ଟିପ୍ପୁଣୀ ଟିପିବ ତା ପରେ ୩ୟ ଟିପୁଣୀ ତା ପରେ ୨ୟ ଟିପୁଣୀ ଏବଂ ଶେଷକୁ ୪ର୍ଥ ଟିପୁଣୀ ଟିପି ବୁଣିବ । ଏହି କ୍ରମରେ ବରାବର ବୁଣିଯିବ ।

## ଡାଇମଣ୍ଡ

### ଡାଇମଣ୍ଡ ବୁଣିବା ପ୍ରଣାଳୀ —

ଡାଇମଣ୍ଡ ବୁଣିବାପାଇଁ ତନ୍ତରେ ନାଚୁଣୀ ଓ ଟିପୁଣୀର ଡୋର ଆଦ ବାନ୍ଧବା ଟୁଇଲରେ ଯେପରି ବନ୍ଧଯାଏ ଠିକ ସେହିପରି ବାନ୍ଧିବାକୁ ହେବ । କିନ୍ତୁ ବଅ ଘୁଞ୍ଚିବାରେ ଏଥିରେ ଯଥେଷ୍ଟ ପ୍ରଭେଦ ଅଛି । ଏହାର ବଅ ନିମ୍ନଲିଖିତ ଭାବେ ଘୁଞ୍ଚିବାକୁ ପଡ଼ିବ ।

| | ଝାଣୀର | ପ୍ରଥମ ସୂତା | ୧ମ ବଅରେ | ଘୁଞ୍ଚିବ |
|---|---|---|---|---|
| | " | ୨ୟ " | ୨ୟ " | " |
| | " | ୩ୟ " | ୩ୟ " | " |
| | " | ୪ର୍ଥ " | ୪ର୍ଥ " | " |
| | " | ୫ମ " | ୧ମ " | " |
| | " | ୬ଷ୍ଠ " | ୨ୟ " | " |
| | " | ୭ମ " | ୩ୟ " | " |
| | " | ୮ମ " | ୪ର୍ଥ " | " |
| | " | ୯ମ " | ୩ୟ " | " |
| | " | ୧୦ମ " | ୨ୟ " | " |
| | " | ୧୧ଶ " | ୧ମ " | " |
| | " | ୧୨ଶ " | ୪ର୍ଥ " | " |
| | " | ୧୩ଶ | ୩ୟ " | " |
| | " | ୧୪ଶ " | ୨ୟ " | " |
| ପୁନଶ୍ଚ | " | ୧୫ଶ " | ୧ମ " | " |

ଅର୍ଥାତ୍ ୧୫ଶ ଠାରୁ ପୁନଶ୍ଚ ୧, ୨, ହିସାବେ ଆରମ୍ଭ କରିବ । ଯହିଁରେ ୧୫ଶଟି ଏକ ବୋଲ ଗଣା ହେବ ।

ଏଥିରେ ଏହୁ ୧୫ ଗୋଟି ଠାଣୀର ସୂତା ଉପରୋକ୍ତ ମତେ ସଜା ହୋଇ ରହୁଲା । ଏହୁ କ୍ରମରେ ଅବଶିଷ୍ଟ ସୂତାଗୁଡ଼ିକ ବଅରେ ଗୁନ୍ଥି ଦେବ । ୧୫ ଗୋଟି ଭରଣୀ ବୁଣିଲେ ଗୋଟିଏ ପୂର୍ଣ୍ଣ ଡାଇମଣ୍ଡ ଚିହ୍ନ ହେବ ଏବଂ ତହିଁ ପାର୍ଶ୍ୱରେ ଅଉ ଗୋଟିଏ ଗୋଟିଏ ଅର୍ଦ୍ଧ ଡାଇମଣ୍ଡ ଚିହ୍ନ ଦେଖାଯିବ । କ୍ରମାଗତ ବୁଣିଲେ ସବୁ ଚିହ୍ନଗୁଡ଼ିକ ପୂର୍ଣ୍ଣ ଡାଇମଣ୍ଡ ଦେଖାଯିବ । ୧୬ ଗୋଟି ଭରଣୀ ନିମ୍ନଲିଖିତ କ୍ରମରେ ବୁଣିଲେ ଗୋଟିଏ ଡାଇମଣ୍ଡ ପୂର୍ଣ୍ଣ ହୋଇ ଅଉ ଗୋଟିକର ଆରମ୍ଭ ହେବ । ୧,୩,୨,୪—୪ ଗୋଟି; ୧,୩,୨,୪—୪ ଗୋଟି ଏବଂ ୨,୩,୧,୪—୪ ଗୋଟି; ୨,୩,୧, ୪—୪ ଗୋଟି । ଏରୂପ ମୋଟ ୧୬ ଗୋଟି ।

ଏହୁ କ୍ରମରେ ପୁନଶ୍ଚ ଯେତେଥର ଆବଶ୍ୟକ, ତେତେଥର ବୁଣି ଶେଷ କରିବ । ଡାଇମଣ୍ଡ ଆକାର ବଡ଼ କରିବାକୁ ହେଲେ ୮ ଗୋଟି ଭାଗରେ ସୂତାର ପରିମାଣ ବଢ଼ାଇ ଯେତେ ଅଧିକ ବଡ଼ କରିବାକୁ ଇଚ୍ଛା କରିବ ତେତେ ବଡ଼ କରିପାରିବ ।

---

## ପଟିବୁଣା

ହୋଟରେ ଟୁଇଲ ଓ ଡାଇମଣ୍ଡ ବୁଣିବା ପ୍ରଣାଳୀ ଦେଖାଇ ଦିଆଗଲା । ସୂତା କମ୍ବା ପାଟ ବା ଟସର କମ୍ବା ଭଳି ବୁଣିବାକୁ ହେଲେ ମଧ୍ୟ ଠିକ୍ ସେହୁ ପ୍ରଣାଳୀରେ ବୁଣିବାକୁ ପଡ଼ିବ ।

ପଟି ଅର୍ଥାତ୍ ପୁଲିସ୍ ବାଲାମାନେ ଗୋଡ଼ରେ ଯେପରି ପଟି ବାନ୍ଧନ୍ତି, ସେହୁପରି ପଟି ବୁଣିବାକୁ ହେଲେ ତାହା ସୂତା କମ୍ବା ଭଳିରେ ବୁଣାଯାଇ ପାରିବ ।

ଫିତ ବା ନେୱାର ଏବଂ ଝୁମ୍ପା (Fringe) ବୁଣିବା ସଙ୍ଗେ ସଙ୍ଗେ ଏ ବିଷୟ ଦିଆଯାଇ ପାରିଥାନ୍ତା । ମାତ୍ର ଏହାର ବୁଣିବା କେତେକ ଅଂଶ ଫିତାବୁଣା ସଙ୍ଗେ ସମାନ ଥିଲେହେଁ ଅଉ କେତେକ ଅଂଶ ଟୁଇଲ୍ ବୁଣା ସଙ୍ଗେ ସମାନ; ତେଣୁ ଟୁଇଲ୍ ବୁଣା ପ୍ରଣାଳୀ ବର୍ଣ୍ଣିତ ହେବା ପରେ ଏବିଷୟ ଦିଆଯାଉଅଛି ।

ପଟି ବୁଣିବା କାରଣ ବଳାସୂତା (Twisted Yarn) ବ୍ୟବହାର କରିବା ଉଚିତ । ୩ ଗୋଟି କମ୍ବା ୪ ଗୋଟି ବଳା ସୂତା ଏକତ୍ର କର ପୁନଶ୍ଚ ତାହାକୁ ବଳ ଯେତେ ଓସାରର ପଟି କରିବାକୁ ଇଚ୍ଛା କରିବ, ସେହୁ ଅନୁସାରେ ଠାଣୀ ପ୍ରସ୍ତୁତ କରିବ ।

ଟୁଇଲ୍ ବୁଣିବା କାରଣ ଟିପ୍ପଣୀ ଓ ନାଚୁଣୀରେ ଯେପରି ଡୋର ବାନ୍ଧିବାର ପ୍ରଣାଳୀ ପୂର୍ବେ ବର୍ଣ୍ଣିତ ହୋଇଅଛି, ଠିକ୍ ସେହି ପ୍ରଣାଳୀରେ ଏଥିକ୍ରମରେ ଟିପ୍ପଣୀରେ ଓ ନାଚୁଣୀରେ ଡୋର ବାନ୍ଧି ବଅ ଶ୍ରେଣୀ ଗୁଡ଼ିକଗୋଟି ସଙ୍ଗେ ସଂଯୁକ୍ତ କରିବ। ଟାଣୀର ଖିଅଗୁଡ଼ିକ କଲ୍ଲୁ ବଅରେ ଗୁନ୍ଥିବା ଏଥିରେ ସମ୍ପୂର୍ଣ୍ଣ ପୃଥକ।

ଟାଣୀର ସୂତାଗୁଡ଼ିକ ଗଣନା କରି ଠିକ୍ ଦୁଇ ଭାଗ କରି ବିଭକ୍ତ କରିବ। ଏଥିରେ ଚାରି ଗୋଟି ବଅ ଆବଶ୍ୟକ, ତେଣୁ ଟାଣୀ ସୂତାଗୁଡ଼ିକ ୪ ଗୋଟି ଲେଖାଏଁ ଭାଗ କରି ପ୍ରତିଭାଗର ପ୍ରଥମ ସୂତାଗୁଡ଼ିକ ପ୍ରଥମ ବଅ ଶ୍ରେଣୀରେ, ଦ୍ୱିତୀୟ ସୂତାଗୁଡ଼ିକ ଦ୍ୱିତୀୟ ବଅ ଶ୍ରେଣୀରେ, ତୃତୀୟ ସୂତାଗୁଡ଼ିକ ତୃତୀୟ ବଅ ଶ୍ରେଣୀରେ ଏବଂ ଚତୁର୍ଥ ସୂତାଗୁଡ଼ିକ ୪ର୍ଥ ବଅ ଶ୍ରେଣୀରେ ଗୁନ୍ଥିଦେବ। ଏହିପରି ଟାଣୀର ପ୍ରଥମ ଅର୍ଦ୍ଧାଂଶ ଶେଷ କରିବ। ତା ପରେ ଦ୍ୱିତୀୟ ଅର୍ଦ୍ଧାଂଶ ସୂତା ମଧ୍ୟରୁ ସେହିପରି ପ୍ରତିଭାଗର ପ୍ରଥମ ସୂତାଗୁଡ଼ିକ ତୃତୀୟ ବଅ ଶ୍ରେଣୀରେ, ଦ୍ୱିତୀୟ ସୂତାଗୁଡ଼ିକ ଦ୍ୱିତୀୟ ବଅ ଶ୍ରେଣୀରେ, ତୃତୀୟ ସୂତାଗୁଡ଼ିକ ପ୍ରଥମ ବଅ ଶ୍ରେଣୀରେ ଏବଂ ଚତୁର୍ଥ ସୂତାଗୁଡ଼ିକ ଚତୁର୍ଥ ବଅ ଶ୍ରେଣୀରେ ଗୁନ୍ଥି ଦ୍ୱିତୀୟ ଅର୍ଦ୍ଧାଂଶ ଶେଷ କରିବ।

ବୁଣିବା ବେଳକୁ ପ୍ରଥମ ଟିପ୍ପଣୀଟି ଥରେ ଟିପି କଣ୍ଢାକାଠିଦ୍ୱାରା ଥରେ ଭରଣୀ ସୂତା ବୁଣି ଗୋଟିଏ ହତାଦ୍ୱାରା ପିଟି ସୂତାଟି ବସାଇ ଦେବ। ତା ପରେ ତୃତୀୟ ଟିପ୍ପଣୀଟି ଟିପି ଥରେ ଭରଣୀ ବୁଣି ହତାଦ୍ୱାରା ଆଘାତ କରିବ। ତା ପରେ ୨ୟ ଟିପ୍ପଣୀକୁ ଟିପି ଥରେ ବୁଣିହତାଦ୍ୱାରା ଆଘାତ କରିବ। ତା ପରେ ୪ର୍ଥ ଟିପ୍ପଣୀକୁ ଟିପି ଥରେ ବୁଣି ହତାଦ୍ୱାରା ଆଘାତ କରିବ।

ପୁନଶ୍ଚ ଉପରୋକ୍ତ କ୍ରମରେ ଅର୍ଥାତ୍ ପ୍ରଥମ, ତୃତୀୟ, ଦ୍ୱିତୀୟ ଓ ଚତୁର୍ଥ ଟିପ୍ପଣୀଗୁଡ଼ିକ ଗୋଟି ଗୋଟି କରି ଟିପି ଗୋଟିଏ ଗୋଟିଏ ଭରଣୀ ବୁଣି କ୍ରମାଗତ ବୁଣିଯିବ

## ପେଟି ବା ବେଲ୍ଟ (Belt)

ସୂତାର ପେଟି ବା କମରବନ୍ଧ ବା ବେଲ୍ଟ ମଧ୍ୟ କେହି କେହି ବ୍ୟବହାର କରନ୍ତି। ସେହି ବେଲ୍ଟ ଏହି ପଟି ବୁଣିବ ପ୍ରଣାଳୀରେ ବୁଣାଯାଏ। ପଟିର ଚଉଡ଼ା ଅଧିକ, ବେଲ୍ଟର ଚଉଡ଼ା କମ୍। ବେଲ୍ଟ ଖଣ୍ଡି ଯେପରି ଚଉଡ଼ାର କରିବାକୁ ହେବ, ସେହି ଚଉଡ଼ାର ଟାଣୀକରି ତାହାର ଖିଅଗୁଡ଼ିକ ଗଣି ମଧ୍ୟଭାଗରୁ ଦୁଇଭାଗ କରି ପଟିବୁଣିବା ପ୍ରଣାଳୀରେ ବଅ ଗୁନ୍ଥି ବୁଣିଗଲେ ପେଟି ବା ବେଲ୍ଟ ହୋଇ ପାରିବ।

# ଫ୍ରେମରେ ଟୁଇଲ୍ ବୁଣା

ଉକ୍ତଦ୍ୱାରା ନାନାପଦାର୍ଥ ଟୁଇଲ୍‌ରେ ବୁଣାଯାଏ । ଟୁଇଲ ବୁଣା ପଦାର୍ଥଗୁଡ଼ିକ ଦେଖିବାକୁ ସୁନ୍ଦର ଏବଂ ଶକ୍ତ ହୁଏ । ଏଥିପୂର୍ବେ ଛୋଟ ଛୋଟ ଫ୍ରେମ୍‌ରେ ଟୁଇଲ୍ ବୁଣିବାର ଉପାୟ ଦେଖାଇ ଦିଆଯାଇଅଛି । ଏଥିରେ ଏଣ୍ଡିର 'ମଫଲର' ବା 'କମ୍ପଟର' ବୁଣିବାର ବିଶେଷ ସୁବିଧା ହେଉଅଛି । ସ୍କୁଲର ବାଳକ ବାଳିକା ଓ ଭଦ୍ର ମହିଳାମାନେ ଏହି ଫ୍ରେମ୍ ସାହାଯ୍ୟରେ ଏଣ୍ଡିର, ସିଲ୍‌କର, ଉଲର ବା ସୂତାର ଯେ କୌଣସି ପଦାର୍ଥ ସହଜରେ ଟୁଇଲ୍‌ବୁଣା ପ୍ରଣାଳୀରେ ବୁଣି ପାରିବେ ।

୩ ଫୁଟ ଲମ୍ବା ଓ ୧ ଫୁଟ ଚୌଡ଼ାର ଗୋଟିଏ ଫ୍ରେମରେ ୫ ଫୁଟ ଲମ୍ବା ଓ ୯ ଇଞ୍ଚ ଚଉଡ଼ାର ଖଣ୍ଡିଏ ମଫଲର୍ ବା କମ୍ପଟ ସହଜରେ ବୁଣାଯାଇ ପାରିବ । ଲମ୍ବା ଓ ଚୌଡ଼ା ଅଧିକ କରିବାକୁ ହେଲେ ଫ୍ରେମର ଆକାର ବଢ଼ାଇବାକୁ ହେବ । ସତରଞ୍ଜି ନିମନ୍ତେ ଯେପରି ଗୃମ୍ପଅଣି, ବଅଡ଼ାଙ୍ଗି, ଯୁଅକାଠି ଓ ଟିପାପଟା, ଆବଶ୍ୟକ ଏଥିରେ ମଧ୍ୟ ସେହିଗୁଡ଼ିକ ଆବଶ୍ୟକ । ମାତ୍ର ଯୁଅକାଠି ୬ ଗୋଟି ଓ ବଅଡ଼ାଙ୍ଗି ୪ ଗୋଟି ପ୍ରୟୋଜନ ହେବ ।



୧ ନମ୍ବର ଚିତ୍ର

ଫ୍ରେମ୍‌ରେ ଟାଣୀସୂତା ଗୁଡ଼ାଇ ସମାନ ଅନ୍ତରରେ ସଜାଇ ଦେବ । ସୂତାଗୁଡ଼ିକ ହଲଚଲ ନ ହେବା କାରଣ ଫ୍ରେମ୍‌ର ଏକ ମୁଣ୍ଡରେ ଖଣ୍ଡିଏ କାଠି ଦେଇ ଗୋଟିଏ ସୂତାଦ୍ୱାରା ପ୍ରତି ସୂତାର ମୁଣ୍ଡ ଛନ୍ଦ ଦେବ ।

ଟାଣୀ ସୂତାଗୁଡ଼ିକୁ ଗୋଟିଏ ଛଡ଼ା ଗୋଟିଏ ଉଠାଇ ଖଣ୍ଡିଏ ଯୁଅକାଠିଦ୍ୱାରା ବିଭକ୍ତ କରିବ ।

ତାପରେ ୪ ଗୋଟି ସୂତା ତଳକୁ ଓ ୪ ଗୋଟି ସୂତା ଉପରକୁ ଭାଗ କରି ତାହିଁ ମଧ୍ୟରେ ଆଉ ଗୋଟିଏ ଯୁଅକାଠି ଦେବ ଏବଂ ତାହା ଉପରକୁ ଉଠାଇଦେବ ।

ତାପରେ ଉପରୋକ୍ତ ମତେ ବିଭକ୍ତ ପ୍ରତି ୪ ଗୋଟି ସୂତା ମଧ୍ୟରୁ ପ୍ରତି ୪ର୍ଥ ସୂତାକୁ ଉପରକୁ ଉଠାଇ ଏବଂ ଅବଶିଷ୍ଟ ୩ ଗୋଟି ସୂତା ତଳକୁ ରଖି ଆଉ ଗୋଟିଏ ଯୁଅକାଠି ଦେବ । ଏହି ଯୁଅକାଠିକୁ ମଧ୍ୟ ଉପରକୁ ଉଠାଇ ପ୍ରଥମ ଯୁଅକାଠିର ତଳକୁ ରଖିବ ।



୨ ନମ୍ବର ଚିତ୍ର

ତା ପରେ ପ୍ରତି ୩ୟ ସୂତାକୁ ଉପରକୁ ଓ ଅବଶିଷ୍ଟ ସୂତାଗୁଡ଼ିକ ତଳକୁ ରଖି ଆଉ ଗୋଟିଏ ଯୁଅକାଠି ଦେବ ।

ପୁଣି ପ୍ରତି ୧ମ ସୂତା ଉପରକୁ ଓ ଅବଶିଷ୍ଟ ସୂତାଗୁଡ଼ିକ ତଳକୁ ରଖି ଆଉ ଗୋଟିଏ ଯୁଅକାଠି ଦେବ ଏବଂ ଶେଷକୁ ପ୍ରତି ପ୍ରଥମ ସୂତାଟି ଉପରକୁ ଓ ଅବଶିଷ୍ଟ ସୂତାଗୁଡ଼ିକ ତଳକୁ ରଖି ଆଉ ଗୋଟିଏ ଯୁଅ-କାଠି ଦେବ ।

ଏହିରୂପେ ୪ ଗୋଟି ଯୁଅକାଠିଦ୍ୱାରା ଭିନ୍ନ ଭିନ୍ନ ଫାନ୍ଦଗୁଡ଼ିକ ପ୍ରସ୍ତୁତ କରିବ ।

ବର୍ତ୍ତମାନ ଏହି ଚାରିଗୋଟି ଫାନ୍ଦକୁ ପୂର୍ବକଥିତ-ମତେ ବଅପଟା ସାହାଯ୍ୟରେ ଚାରିଗୋଟି ବଅଡାଙ୍ଗରେ ଚାରିଗୋଟି ବଅ ବାନ୍ଧିବ ଏବଂ ସମସ୍ତ ଯୁଅକାଠିଗୁଡ଼ିକ କାଢ଼ି ନେବ ।

**ବୁଣା**—ଭରଣୀ ନିମନ୍ତେ ଦୁଇ ବା ତିନି ଖିଅ ସୂତାକୁ ଅଲଗା କରି ପ୍ରସ୍ତୁତ କରି ରଖିବ । ବୁଣିବା କାରଣ ଆବଶ୍ୟକମତେ ତହିଁରୁ କେତେକ ସୂତା କଣ୍ଡାକାଠିରେ ଗୁଡ଼ାଇ ରଖିବ ।

୧ । ପ୍ରଥମେ ପ୍ରଥମ ଓ ଦ୍ୱିତୀୟ ବଅକାଠି ଦୁଇଟିକୁ ଏକାଠି ବାମ ହାତର ବୁଢ଼ା ଅଙ୍ଗୁଳିଦ୍ୱାରା ଉପରକୁ ଉଠାଇ ଅବଶିଷ୍ଟ ଅଙ୍ଗୁଳିମାନଙ୍କଦ୍ୱାରା ୩ୟ ଓ ୪ର୍ଥ ବଅକାଠି ଦୁଇଟିକୁ ଚିପି ଧରିଲେ ଯେଉଁ ଫାନ୍ଦ ଉଠିବ, ତହିଁ ମଧ୍ୟରେ ଚୂପୁଆଣି ପଟାଖଣ୍ଡି ପୂରାଇ ତାହାକୁ ପ୍ରସାରିତ କରିବ । ଏହି ବ୍ୟବଧାନରେ କଣ୍ଡାକାଠି ପୂରାଇ ଗୋଟିଏ ଖିଅ ଭରଣୀ ବୁଣିବ । ଚୂପୁଆଣି ପଟା-ଦ୍ୱାରା ତାହାକୁ ପିଟି ନିମ୍ନକୁ ବସାଇଦେବ ।

୨ । ଦ୍ୱିତୀୟ ଥରକୁ ୨ୟ ଓ ୩ୟ ବଅଡାଙ୍ଗି ଦୁଇଟିକୁ ସେହିପରି ବାମହାତର ବୁଢ଼ା-ଅଙ୍ଗୁଳିଦ୍ୱାରା ଉପରକୁ ଉଠାଇ ୪ର୍ଥ ବଅ କାଠିକୁ ଅନ୍ୟ ଅଙ୍ଗୁଳିମାନଙ୍କଦ୍ୱାରା ଚିପି ଧରି ୨ୟ ଖିଅ ଭରଣୀ ବୁଣିବ ।

୩ । ତୃତୀୟ ଥରକୁ ୩ୟ ଓ ୪ର୍ଥ ଦୁଇ ବଅ ଡାଙ୍ଗିକୁ ବାମ ହାତର ବୁଢ଼ା ଅଙ୍ଗୁଳି ଦ୍ୱାରା ଉପରକୁ ଉଠାଇ ଅବଶିଷ୍ଟ ଅଙ୍ଗୁଳିମାନଙ୍କଦ୍ୱାରା ଏହିଠାରେ ଚିପାପଟା ଖଣ୍ଡିକ ରଖି ଚିପି ଦେଲେ ଯେଉଁ ଫାନ୍ଦ ଉଠିବ, ତହିଁ ମଧ୍ୟରେ ୩ୟ ଥରକୁ ଭରଣୀ ସୂତା ବୁଣିବ ।

୪ । ଚତୁର୍ଥ ଥରକୁ ୪ର୍ଥ ଓ ୧ମ ଦୁଇଗୋଟି ବଅକାଠିକୁ ବାମ ହାତର ବୁଢ଼ାଅଙ୍ଗୁଳି ଦ୍ୱାରା ଉପରକୁ ଉଠାଇ ଅନ୍ୟ ଅଙ୍ଗୁଳିମାନଙ୍କଦ୍ୱାରା ଟିପାପଟାଟି ଟିପି ଦେଲେ ଯେଉଁ ଫାନ୍ଦ ଉଠିବ, ତହିଁରେ ୪ର୍ଥ ଥରକୁ ଭରଣୀ ସୁତା ବୁଣିବ ।

ତା ପରେ ପୁନରାୟ ୧ମ ଓ ୨ୟ, ୨ୟ ଓ ୩ୟ, ୩ୟ ଓ ୪ର୍ଥ ଏବଂ ୪ର୍ଥ ଓ ୧ମ ବଅଡାଙ୍ଗିମାନଙ୍କୁ ପୂର୍ବବତ୍ ଉଠାଇ କ୍ରମାଗତ ଆବଶ୍ୟକୀୟ ପଦାର୍ଥଟି ବୁଣିଯିବ ।

ବୁଣିବା ସମୟରେ ମଫ୍‌ଲର୍ ଖଣ୍ଡିକର ଚୌଡ଼ା ସମାନ ରଖିବା କାରଣ କଣ୍ଟାସି ବା ମୋଡକଣ୍ଟା ଲଗାଇବା ଆବଶ୍ୟକ । କଣ୍ଟାସ ନାନା ପ୍ରକାରର କରାଯାଇ ଥାଏ ।

ଏହା ପାର୍ଶ୍ୱରେ ୩ନମ୍ବର ଚିତ୍ର ଦେଲେ ଇନସଟି ସମାନ ରଖିବା ସମ୍ବନ୍ଧେ କୌଣସି ସନ୍ଦେହ ରହିବ ନାହିଁ ।

ଏହି କଣ୍ଟାସି କେବଳ ୨ଖଣ୍ଡି ସରୁ ବାଉଁଶକାଠି । ଏମାନଙ୍କର ଗୋଟିଏ ଗୋଟିଏ ମୁଣ୍ଡ ସରୁ କରାଯାଇ ତହିଁରେ ଗୋଟିଏ ଗୋଟିଏ ପିନ୍ ବା ଛୁଞ୍ଚି ବନ୍ଧା ଯାଇଅଛି । ପିନ୍ ବା ଛୁଞ୍ଚିର ପ୍ରାୟ ½ ଇଞ୍ଚ ପଦାକୁ ବାହାରିଅଛି । ଅପର ଦୁଇମୁଣ୍ଡ ଖଣ୍ଡିଏ ଦଉଡ଼ିଦ୍ୱାରା ଏମାନଙ୍କୁ ସଂଲଗ୍ନ କରାଯାଇଅଛି । କାଠି ଦୁଇଟି ଛକ କରି ରଖାଯାଇ ଛକର ଦୁଇ ପାଖରେ ୨ଖଣ୍ଡି ସୁତା 'କ' 'ଖ' ଓ 'ଗ' 'ଘ' ହୁଗୁଳା କରି ଲଗାଇ ଦିଆ ଯାଇଅଛି । ଯାହା ବୁଣିବ ତାହା ଉପରେ ଏହି କଣ୍ଟାସିଟି ରଖିଦେବ । ଦୁଇ ଅଗ୍ରଭାଗର ପିନ୍‌ଦ୍ୱାରା ଦୁଇ ପାଖରେ ଫୁଟାଇ ଦେଇ ଛକ ଦୁଇ ପାଖର ହୁଗୁଳା ସୁତା ଦୁଇଟି ବାହାର ଆଡ଼କୁ ଟାଣିଦେଲେ କଣ୍ଟାସିଟି ଭିଡ଼ହୋଇ ରହିବ । ପ୍ରତି ୧ ଇଞ୍ଚ ବୁଣିବା ପରେ କଣ୍ଟାସିଟି କାଢ଼ି ଉପରକୁ ଲଗାଇ ଦେଉଥିବ ।



୩ ନମ୍ବର ଚିତ୍ର

୪ ନମ୍ବର ଚିତ୍ର

ତାହାହେଲେ ଚଉଡ଼ା କମ୍ ବେଶୀ ନ ହୋଇ ଶେଷ ପର୍ଯ୍ୟନ୍ତ ଏକ ସମାନ ବୁଣା ହେବ । ୪ ନମ୍ବର ଚିତ୍ରରେ ମଧ୍ୟ ଆଉ ଗୋଟିଏ ପ୍ରକାର କଣ୍ଟାସି ଦେଖିପାରିବ ।

## ଛୁଣ୍ଡା କନାର ବ୍ୟବହାର

ପ୍ରତ୍ୟେକ ଗୃହରେ ଯେଉଁ ଲୁଗାସବୁ ପିନ୍ଧିଲା ପରେ ଚିରିଯାଇଅଛି ସେଗୁଡ଼ିକ ବ୍ୟବହାର କଲେ କେତେ ସୁନ୍ଦର ପଦାର୍ଥମାନ ପ୍ରସ୍ତୁତ କରାଯାଇ ପାରିବ ।

**କନ୍ଥା**—ଛିଣ୍ଡାକନାରେ କନ୍ଥା ସିଲାଇ କରିବା ଅତି ସହଜ । ପରସ୍ତକୁ ପରସ୍ତ ଯେଉଁଠାରେ ଯାହା ଲାଗିବ ତାହା ପରସ୍ତ କନା ପକାଇ ଯେତେ ଲମ୍ବା ଓ ଯେତେ ଚଉଡ଼ାର କନ୍ଥାଟି କରିବାକୁ ଇଚ୍ଛା କରିବ, ସେହି ମାପରେ ସଜାଇ ଉପରେ କୋଣକୁ କୋଣ ଉଭୟ ପାର୍ଶ୍ୱରୁ ସିଲାଇ କରିଗଲେ ସୁନ୍ଦର ବ୍ୟବହାର ଉପଯୋଗୀ ଗୋଟିଏ ପଦାର୍ଥ ହେବ । ତହିଁର କନାସ୍ୱରେ ଶାଢ଼ୀର ଧଡ଼ି ଲଗାଇ ଦେବ । ଉପର ପରସ୍ତ କନାକୁ ରଙ୍ଗ କରିନେଲେ ଆହୁରି ସୁନ୍ଦର ହେବ ।

କନାଗୁଡ଼ିକ ବ୍ୟବହାର କରିବା ପୂର୍ବେ ଉତ୍ତମରୂପେ ପରିଷ୍କାର କରିନେଇ ବ୍ୟବହାର କରିବ । ଧୋବାଘରେ ପକାଇ ସଫା କରି ଆଣି ପାର ଅଥବା ଲୁଗାଧୁଆ ସୋଡ଼ା ବା ସାବୁନରେ ସିଦ୍ଧ କରି, ଉତ୍ତମରୂପେ କାଚି ଅଳ୍ପ ନୀଳବଡ଼ି ମିଶ୍ରିତ ପାଣିରେ ବୁଡ଼ାଇ ଶୁଖାଇ ଦେବ । ରଙ୍ଗ କରିବାକୁ ଇଚ୍ଛା କଲେ ଅଶ୍ୱତ୍ଥ, ପଣସ, ବର ବା ଅନ୍ୟ କୌଣସି ଗଛର ଛାଲକୁ ସିଦ୍ଧ କରି ସେହି ପାଣିରେ ରଙ୍ଗ କରିନେବ ।

**ଛିଣ୍ଡା କନାର ଆସନ**—ଛିଣ୍ଡା କନାରେ ଆସନ ବୁଣିବାକୁ ଇଚ୍ଛାକଲେ ଏହି ପୁସ୍ତକରେ ପୂର୍ବେ ବର୍ଣ୍ଣିତ ହୋଇଥିବା ଫର୍ମୀରେ ଶତରଞ୍ଜି ବୁଣିବା ପ୍ରଣାଳୀରେ ସୂତାର ବା ଝୋଟର ତାଣିରେ ଟାଣୀ କରିବ । କନାଗୁଡ଼ିକ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗାଇ ନେବ । ସେଗୁଡ଼ିକ ସମାନ କରି କାଟି ପକାଇବ । ଗୋଟିଏ ହାତ ଟାକୁଆରେ ଅଳ୍ପ କନା ନେଇ ସେଗୁଡ଼ିକ ଭରଣୀ ରୂପେ ବ୍ୟବହାର କଲେ ସୁନ୍ଦର ଆସନ ଖଣ୍ଡିଏ ହେବ । ଏଥିରେ ଭିନ୍ନ ଭିନ୍ନ ରଙ୍ଗର ଭରଣୀ ଦେଇ ନାନାପ୍ରକାର ଚିତ୍ର ବିଚିତ୍ର ଆସନ ମଧ୍ୟ କରିପାରିବ । ଫୁଲ ପକାଇ ପାର ଓ କାମ କରିପାର । ତହିଁର ଦାଢ଼ରେ ଭଲ କମ୍ପା



୧ ନମ୍ବର ଚିତ୍ର

କୌଣସି ଉଜ୍ଜ୍ୱଳ ରଙ୍ଗର ସୂତାରେ ଝାଲର ଲଗାଇ ଦେଲେ ଆହୁରି ମନୋହର ହେବ ।

## ଛିଣ୍ଡା କନାର ଟେବଲ୍ ବା ବାକ୍ସର ଘୋଡଣୀ ।

ଛିଣ୍ଡାକନାରେ ସୁନ୍ଦର ଟେବଲ ବା ବାକ୍ସର ଉପର ଘୋଡ଼ଣୀ (Table cover or Box cover) ହୋଇ ପାରେ । ଏଥି ନିମନ୍ତେ ୧୪ ଇଞ୍ଚ ବା ୨ଇଞ୍ଚ ଚଉଡ଼ାର ୪ଖଣ୍ଡି ପଟା ନେଇ ତହିଁରେ ୨ ନମ୍ବର ଚିତ୍ର ପରି ଖଣ୍ଡିଏ ଫରମା ତିଆର କରିନେବ । ତହିଁର ଚାରିପାଖ ସମାନ ରଖିବ । ଏହି ଫରମାର ପ୍ରତି ବାହୁ ଉପରେ ½ଇଞ୍ଚ ଅନ୍ତର ରଖି ଗୁଡ଼ିଏ କ୍ଲିପ୍‌ପିନ କଣ୍ଟା ବସାଇ ଦେବ । ଯେପରି କଣ୍ଟାର ଛଡ଼ ଗୁଡ଼ିକ ୧ଇଞ୍ଚ ଉପରକୁ ଉଠି ରହିବ ଏବଂ ପ୍ରତି ବାହୁ ଉପରେ କଣ୍ଟାର ସଂଖ୍ୟା ସମାନ ରହିବ । କନାଗୁଡ଼ିକ ପରିଷ୍କାର କରି ରଙ୍ଗ କରିନେବ । ତାପରେ ସେଗୁଡ଼ିକୁ ସମାନ କରି ଚିରି ପକାଇବ ।



୨ ନମ୍ବର ଚିତ୍ର

୧ । ଚିତ୍ରର ଉପର ପାଖ ବାମ କୋଣରୁ ୧ମ କଣ୍ଟାରେ କନା ଖଣ୍ଡିଏ ବାନ୍ଧି ଉପର ବାହୁର ୨ୟ କଣ୍ଟାର ଡାହାଣ ଆଡ଼େ ବୁଲାଇ ଆଣି ବାମ ପାଖ ବାହୁର ୧ମ ଓ ୨ୟ କଣ୍ଟାର ମଧ ଦେଇ ୩ୟ ଓ ୪ର୍ଥ କଣ୍ଟା ମଧ୍ୟରେ ଫେରାଇ ନିଅ ଏବଂ ଉପର ବାହୁର ୨ୟ ଓ ୩ୟ କଣ୍ଟା ମଧ୍ୟରେ ନେଇ ତହିଁର ୪ର୍ଥ ଓ ୫ମ କଣ୍ଟା ମଧ୍ୟରେ ଫେରାଇ ଆଣ ।

ଏହିପରି ପ୍ରତି ବାହୁର ଦୁଇ ଦୁଇଟି କଣ୍ଟାରେ ବୁଲାଇ ଫରମାର ତଳ ପାଖର ଡାହାଣ କୋଣ ପର୍ଯ୍ୟନ୍ତ ପୂର୍ଣ୍ଣ କରିବ ।

୨ । ପ୍ରଥମ ପରସ୍ତ ଉପରର ବାମ କୋଣରୁ ଆରମ୍ଭ କରି ତଳର ଡାହାଣ କୋଣ ପର୍ଯ୍ୟନ୍ତ ଯେପରି କନା ଗୁଡ଼ା ହୋଇଗଲା ସେହିପରି ତଳ ପାଖର ବାମ କୋଣରୁ ଆରମ୍ଭ କରି ତଳ ବାହୁରୁ ବାମ ବାହୁର ଓ ଉପର ବାହୁରୁ ଡାହାଣ ବାହୁର ଦୁଇ ଦୁଇଟି କଣ୍ଟାରେ



୩ ନମ୍ବର ଚିତ୍ର



୪ ନମ୍ବର ଚିତ୍ର

କନା ବୁଲାଇ ଉପର ପାଖର ଡାହାଣ କୋଣ ପର୍ଯ୍ୟନ୍ତ ପୂର୍ଣ୍ଣ କରିବ ।

୩ । ତୃତୀୟ ଥରକୁ ଉପର ବାଡ଼ର କଣ୍ଟାରୁ ତଳ ବାଡ଼ର କଣ୍ଟା ସଙ୍ଗେ ଦୁଇ ଦୁଇଟି କଣ୍ଟାରେ ସେହିପରି ଏକ ପରସ୍ତ ବୁଲାଇ ନେବ ।

୪ । ଚତୁର୍ଥ ଥରକୁ ବାମପାଖର ବାଡ଼ର କଣ୍ଟାରୁ ଡାହାଣ ବାଡ଼ର କଣ୍ଟା ସଙ୍ଗେ ଠିକ୍ ପୂର୍ବପରି ଏକ ପରସ୍ତ କନା ବୁଲାଇ ନେବ ।

୫ । ପଞ୍ଚମ ଥରକୁ ଠିକ୍ ୨ୟ ଥର ପରି ତଳପାଖର ବାମ କୋଣରୁ ଆରମ୍ଭ କରି ତଳ ବାଡ଼ରୁ ବାମ ବାଡ଼କୁ ଓ ଉପର ବାଡ଼ରୁ ଡାହାଣ ବାଡ଼କୁ ସେହିପରି କନା ବୁଲାଇ ନେବ ।

୬ । ଷଷ୍ଠ ଥରକୁ ଠିକ୍ ୧ମ ଥର ପରି ଉପରପାଖ ବାମ କୋଣରୁ ଆରମ୍ଭ କରି ଉପର ବାଡ଼ରୁ ବାମ ବାଡ଼କୁ ଓ ଡାହାଣ ବାଡ଼ରୁ ତଳ ବାଡ଼କୁ ଦୁଇ ଦୁଇଟି କଣ୍ଟାରେ କନା ଗୁଡ଼ାଇ ନେଇ ଶେଷ କରି ଏକ ସ୍ଥାନରେ ବାନ୍ଧିଦେବ ।



୫ ନମ୍ବର ଚିତ୍ର

ବର୍ତ୍ତମାନ ଫରମାଟି ମଧ୍ୟରେ ଏହି ଛଅ ପରସ୍ତ କନାର ଏକତ୍ର ସଂଯୋଗଦ୍ୱାରା ଯେଉଁ ଛକଗୁଡ଼ିକ ଗଠିତ ହେଲା ସେହି ପ୍ରତି ଛକରେ ଖଣ୍ଡିଏ ରଙ୍ଗ ସୁତା ବା ଉଲ୍-ଦ୍ୱାରା ଗୋଟିଏ ଗୋଟିଏ ଗଣ୍ଠି ପକାଇ ଦିଅ ଏବଂ ପ୍ରତି କଣ୍ଟା ମୂଳରୁ କନାଗୁଡ଼ିକ କାଟିଦେଇ ଫ୍ରେମରୁ ତାହାକୁ ଉଠାଇ ନେଲେ ସୁନ୍ଦର ଗୋଟିଏ ଟେବୁଲ୍ ବା ବାକ୍ସର ଘୋଡ଼ଣୀ ବାହାରିବ ।

## ଊଲ୍ ବୁଣିବା ପ୍ରଣାଳୀ

ଊଲ୍‌ରେ ନାନା ପଦାର୍ଥ ବୁଣାଯାଏ । ମାତ୍ର ଓଡ଼ିଶାରେ ବର୍ତ୍ତମାନ ଯେଉଁ ଊଲ୍ ମିଳୁ-ଅଛି, ତାହା ନିକୃଷ୍ଟଜାତୀୟ ଥିବାରୁ ତଦ୍ଦ୍ୱାରା କେବଳ କମ୍ବଳ ଓ ଗାଲିଚା ବୁଣାଯାଇ ପାରେ । ତେଣୁ ଏହି ପୁସ୍ତକରେ କେବଳ କମ୍ବଳ ଓ ଗାଲିଚା ବୁଣିବାର ପ୍ରଣାଳୀ ବିଶଦଭାବେ ବର୍ଣ୍ଣିତ ହେଲା । ଉତ୍କୃଷ୍ଟ ପଶମ ହେଲେ ତାହା ସାଧାରଣ ଲୁଗା ବୁଣିବା ପ୍ରଣାଳୀରେ ବୁଣାଯାଇ ପାରିବ । ସେହିପରି ଊଲ୍‌ରେ ଘୋଡ଼ାଇ ହେବାର ଚାଦର ଓ ଜାମା ପ୍ରସ୍ତୁତ ପାଇଁ ଲୁଗା ବୁଣାଯାଇ ପାରିବ ।

ଓଡ଼ିଶାରେ ବର୍ଷ ମଧ୍ୟରେ ବହୁ ପରିମାଣରେ ପଶମର ଲୁଗାପଟା ବିଦେଶରୁ ଆସି ବିକ୍ରୟ ହେଉଅଛି । ଓଡ଼ିଶା ମଧ୍ୟରେ କେବଳ ମୟୂରଭଞ୍ଜ ଷ୍ଟେଟ୍‌ରେ ଏହି ସବୁ ପଶମ ଲୁଗା ବୁଣିବାର ଗୋଟିଏ କାରଖାନା ଅଛି । ଉକ୍ତ କାରଖାନା ଓଡ଼ିଶା ମଧ୍ୟରେ ଗୋଟିଏ ବଡ଼ କାରଖାନା । ତାହା ବାରିପଦାରେ ଅବସ୍ଥିତ । ଏ କାରଖାନାର ନାମ ପୂର୍ଣ୍ଣଚନ୍ଦ୍ର ଇଣ୍ଡଷ୍ଟ୍ରିୟାଲ୍ ଇନ୍‌ଷ୍ଟିଚ୍ୟୁଟ୍ (Purna Chandra Industrial Institute) ଏଠାରେ ନାନା ପ୍ରକାରର ପଶମ ଲୁଗାପଟା ବୁଣାଯାଏ । ତାହା ଛଡ଼ା ସେଠାରେ ସିଲ୍କ (silk), ଟସର ଓ ନାନା ପ୍ରକାର ସୂତାର ପଦାର୍ଥମାନ ବୁଣା ହୁଏ, ରଙ୍ଗା ଯାଏ ଏବଂ ଛପା ହୁଏ ।

---

## କମ୍ବଳ ବୁଣା

ଓଡ଼ିଶାର ମେଣ୍ଢାଙ୍କର ଲୋମ ଅଧିକ ଲମ୍ବା ନୁହେଁ କି ଅଧିକ କୋମଳ ନୁହେଁ । ତେଣୁ ତହିଁରେ ଉଚ୍ଚ ଶ୍ରେଣୀର ଶୀତଲୁଗା କିମ୍ବା ଜାମାର କନା ବୁଣା ହୋଇ ପାରିବ ନାହିଁ । ଓଡ଼ିଶାର ମେଣ୍ଢାଙ୍କ ଲୋମରେ ଗାଲିଚା ଓ କମ୍ବଳ ଅନାୟାସରେ ହୋଇ ପାରିବ । ଓଡ଼ିଶାରେ ଯେତେ କମ୍ବଳ ଲୋଡ଼ା ହୁଏ ତାହାର ପରିମାଣ କମ୍ ନୁହେଁ । ଖାଲି ଜେଲ୍ ଓ ଡାକ୍ତରଖାନାମାନଙ୍କ ସକାଶେ ସରକାରଙ୍କ ତରଫରୁ ବର୍ଷରେ ୧୬।୧୭ ହଜାର ଟଙ୍କାର କମ୍ବଳ ଖରିଦ ହେଉଅଛି । ତାହା ଛଡ଼ା ଅଧିକାଂଶ ଉଚ୍ଚ ଶ୍ରେଣୀର ଗୃହସ୍ଥମାନଙ୍କର ଚାକରଙ୍କ ସକାଶେ ଏବଂ ମଧ୍ୟମ ଶ୍ରେଣୀର ଗୃହସ୍ଥମାନଙ୍କ ଘରେ ବରାବର ଶୀତକାଳରେ କମ୍ବଳ କିଣାଯାଏ । ଓଡ଼ିଶାରେ ଯେତେ କମ୍ବଳ ଆବଶ୍ୟକ, କେବଳ ସେତିକି କମ୍ବଳ ବୁଣାଯାଇ ପାରିଲେ ଓଡ଼ିଶାର କେତେ ଧନ ଓଡ଼ିଶାରେ ରହିଯାଇ ପାରନ୍ତା ।

ଓଡ଼ିଶାର ମେଣ୍ଢାଙ୍କ ଲୋମରେ ଯେଉଁ ଭଳି କମ୍ବଳ ହୋଇ ପାରିବ, ତାହା ଅପେକ୍ଷା ଉଚ୍ଚ ଶ୍ରେଣୀର କମ୍ବଳ ବୁଣିବାକୁ ଇଚ୍ଛା କଲେ ବିଦେଶରୁ କିଛି ଉତ୍ତମ ମେଣ୍ଢାଲୋମ କିଣି ଆଣି ତାହା ସହିତ ଓଡ଼ିଆ ଲୋମ ମିଶାଇ ସୂତା କାଟିବ । ସେହି ସୂତାରେ କମ୍ବଳ ବୁଣିଲେ ତାହା ସାଧାରଣ ଲୋମର କମ୍ବଳଠାରୁ ସରସ ହେବ । ଯେଉଁ ପରିମାଣରେ ଉତ୍କୃଷ୍ଟ ଲୋମ ମିଶାଇ ବୁଣିବ, ସେ ପଦାର୍ଥ ସେହି ପରିମାଣରେ ଅଧିକ ସରସ ହେବ । ଓଡ଼ିଶାରେ ମଧ୍ୟ ଭିନ୍ନ ଦେଶର ମେଣ୍ଢା ଆଣି ଅନେକ ଲୋକ ପୋଷୁଅଛନ୍ତି । ସେହିମାନଙ୍କ ଲୋମରେ ଉତ୍ତମ କମ୍ବଳ ବୁଣା ହୋଇ ପାରିବ ।

କମ୍ବଳ ସାଧାରଣତଃ ତନ୍ତଦ୍ୱାରା ବୁଣାଯାଏ । ଏହା ସାଧା ବୁଣା ଓ ଟୁଇଲ୍ ବୁଣା ଉଭୟ ପ୍ରଣାଳୀରେ ବୁଣାଯାଇ ପାରେ । କମ୍ବଳ ବୁଣିବାର ଦକ୍ତି ଲୁଗା ବୁଣିବାର ଦକ୍ତିଠାରୁ ଅଧିକ ଲମ୍ବା ଓ ଅଧିକ ଚଉଡ଼ା ହେବା ଆବଶ୍ୟକ । ଏହାର ମାକୁର ଆକାର ଡଙ୍ଗା ପରି । ଏହା ଲୁଗାବୁଣା ମାକୁଠାରୁ ବଡ଼ ଏବଂ ତାହାର ଗୋଟିଏ ପାର୍ଶ୍ୱ ବନ୍ଦ ଥାଏ । ବୁଣିବାବେଳେ ଅପର ପାଖଟି ମଧ୍ୟ ବନ୍ଦ କରିବା କାରଣ ଖଣ୍ଡିଏ ଟିଣର ପଟି ବ୍ୟବହାର କରାଯାଏ । ଦକ୍ତିର ଦୁଇପ୍ରାନ୍ତରେ ମାକୁ ରହିବାର ଘର ଦୁଇଟି ମଧ୍ୟ ବଡ଼ ବଡ଼ କରାଯାଏ । ସାଧାରଣତଃ ଏଥି ନିମନ୍ତେ ୧୨।୧୪ ନମ୍ବର ପାନିଆ ବ୍ୟବହାର କରାଯାଏ ।



୧ ନମ୍ବର ଚିତ୍ର

**ଟାଣୀ**—ସାଧାରଣ ସୂତାର ଲୁଗା ନିମନ୍ତେ ଯେପରି ଟାଣୀ କରାଯାଏ, ଏଥିପାଇଁ ମଧ୍ୟ ଠିକ୍ ସେହିପରି ଦୁଇଗୋଟି ଫାନ୍ଦ ରଖି ଟାଣୀ ପ୍ରସ୍ତୁତ କରିବାକୁ ହୁଏ । ମାତ୍ର ସୂତାର ବା ପାଟର ଟାଣୀପରି କମ୍ବଳ ନିମନ୍ତେ ଅଧିକ ଲମ୍ବା ଟାଣୀ କରିବା ସୁବିଧାଜନକ ନୁହେଁ ।

ଛୋଟ ଛୋଟ ଟାଣୀ ଅଳ୍ପ ସ୍ଥାନ ମଧ୍ୟରେ କରାଯାଇ ପାରେ । ଭୂମିରେ ଗୋଟି କେତେ ଖୁଣ୍ଟି ପୋତି ଟାଣୀ ପ୍ରସ୍ତୁତ କରି ପାରିବ କିମ୍ବା ଖଣ୍ଡିଏ ପଟା ଉପରେ ଗୋଟି କେତେ ଖିଲ ବସାଇ ତଦ୍ୱାରା ଟାଣୀ



୨ ନମ୍ବର ଚିତ୍ର

କରି ପାରିବ । ଅପର ପାର୍ଶ୍ୱରେ ଖଣ୍ଡିଏ ପଟା ଉପରେ ଖିଲ ବସିଥିବାର ଚିତ୍ର ଦିଆଯାଇଅଛି । ତହିଁରେ ଯେପରି ଖିଲଗୁଡ଼ିଏ ବସିଅଛି, ଭୂମିରେ ଟାଣୀ ତିଆରି କଲେ ଠିକ୍ ସେହିପରି ଖୁଣ୍ଟି ଗୁଡ଼ିକ ପୋତିବାକୁ ପଡ଼ିବ ।

ପଟାଖଣ୍ଡିକର ଦୁଇ ପ୍ରାନ୍ତରେ ଯେଉଁ ଦୁଇଧାଡ଼ି ଖିଲ ବସିଅଛି, ସେଗୁଡ଼ିକ ୪ ଇଞ୍ଚ ଲେଖାଏଁ ଛଡ଼ା ଛଡ଼ା ହୋଇ ବସିଅଛି । ୫ ଓ ୬ ଚିହ୍ନିତ ଖିଲ ଦୁଇଟି ଯଥାକ୍ରମେ 'କ' ଚିହ୍ନିତ ପ୍ରାନ୍ତର ୧ ଓ ୪ ଖିଲଠାରୁ ଭିତର ଆଡ଼କୁ ଠିକ୍ ଲାଇନରେ ୬ ଇଞ୍ଚ କରି ଅନ୍ତରରେ ବସିଅଛି । ୭ମ ଖିଲଟି ଆଉ କିଛି ଅଧିକ ଦୂରରେ ବସିଅଛି ।

ଗୋଟିଏ ଖିଲରୁ ଆରମ୍ଭ କରି ସୂତାଗୁଡ଼ିକ ଆଦ୍ୟରେ ଓ ଶେଷରେ ଦୁଇଗୋଟି ଫାନ୍ଦ ରଖି ବୁଲାଇ ବୁଲାଇ ଟାଣୀ ପ୍ରସ୍ତୁତ କରି ପାରିବ । ଶେଷକୁ ୨ ଫାନ୍ଦକୁ ଦୁଇଗୋଟି ସୂତାରେ ବାନ୍ଧିଦେଇ ଟାଣୀଟି ବାହାର କରିନେବ ।

୩ ନମ୍ବର ଚିତ୍ରପରି ଗୋଟିଏ ବଡ଼ ଫ୍ରେମ୍ କରି ତହିଁର ବାହୁ ଗୁଡ଼ିକରେ ଖିଲଗୁଡ଼ିଏ ବସାଇ ତହିଁରେ ବଡ଼ ବଡ଼ ଟାଣୀ ମଧ୍ୟ ପ୍ରସ୍ତୁତ କରାଯାଇ ପାରେ ।



୩ ନମ୍ବର ଚିତ୍ର

**ମଣ୍ଡ** — ଟାଣୀ କରିବା ପରେ ତହିଁରେ ମଣ୍ଡ ଦେବା ଆବଶ୍ୟକ । ସାଧାରଣତଃ ଗୁଣ୍ଡଲମଣ୍ଡ ଦିଆଯାଏ । ୧ ସେର ଟାଣୀ ସୂତା ନିମନ୍ତେ ୧ ପାଆ ଅରୁଆଚାଉଳ କରୁଆଇ ତାହାକୁ ବାଟି ସିଦ୍ଧଦେଲେ ମଣ୍ଡ ପ୍ରସ୍ତୁତ ହେବ । ତହିଁରେ ଏକଛଟାଙ୍କି ତେଲ ମିଶାଇଦେଲେ ବୁଣିବାକୁ ବିଶେଷ

ସୁବିଧା ହେବ । ସୋରିଷ, ଜଡ଼ା, ପୁନ୍ନାଗ ପ୍ରଭୃତି ଯେ କୌଣସି ତେଲ ଦେଇ ପାରିବ । ଗୃହଜଳକୁ ନ ବାଛି କେହି କେହି ପେଜ ବ୍ୟବହାର କରନ୍ତି । ମଣ୍ଡଦେଇ ସାରି ଚାଣିକୁ ଶୁଖାଇ ଦେବ । ଶୁଖାଇବା ସମୟରେ ସୂତା ଗୁଡ଼ିକ ହାତରେ ଛଡ଼ାଇ ଗୋଟି ଗୋଟି କରିଦେବ । ତାପରେ ବମ୍ ଉପରେ ଗୁଡ଼ାଇ ତନ୍ତରେ ଚଢ଼ାଇ ଦେବ ।

**ବଅ** – ଏଥିଯୋଗ୍ୟ ତାରର ବଅ ସୁବିଧାଜନକ ନୁହେ । ଏଥିପାଇଁ ବଅକୁ ସୂତାରେ ବାନ୍ଧିବାକୁ ପଡ଼ିବ । ପୂର୍ବେ ବନ୍ଧା ବଅ ବିଷୟ ଉଲ୍ଲେଖ ହୋଇଅଛି ଏବଂ ତହିଁର ବ୍ୟବହାର ମଧ୍ୟ ଝୋଟବୁଣା ଅଧ୍ୟାୟରେ ଦେଖାଇ ଦିଆଯାଇ-ଅଛି । ତାହା ପ୍ରସ୍ତୁତ କରିବାର ପ୍ରଣାଳୀ ଏଠାରେ ଦିଆଗଲା ।



୪ ନମ୍ବର ଚିତ୍ର

ପ୍ରଥମେ ଖଣ୍ଡିଏ ୫।୬ ଇଞ୍ଚ ଚଉଡ଼ା ପଟାରେ ବଅଗୁଡ଼ିଏ ପ୍ରସ୍ତୁତ କରିବାକୁ ହୁଏ । ୪ ନମ୍ବର ଚିତ୍ର ପରି ପଟାଟିରେ ଖଣ୍ଡିଏ ଡୋର ବାନ୍ଧିବ । ସେ ଡୋରରେ ଦୁଇଟି ଗଣ୍ଠି ଦେବ । ତହିଁ ଉପରେ ନିଜର ଗୋଟିଏ ଆଙ୍ଗୁଠି ରଖି ଆଉ ଦୁଇଗୋଟି ଗଣ୍ଠି ଦେବ । ତା ପରେ ଅଙ୍ଗୁଠି କାଢ଼ିନେଇ ସେହି ଦୁଇ ଗଣ୍ଠିକୁ ପଟାଖଣ୍ଡିକ ଉପରେ ଏକତ୍ର ଲଗାଲଗି କରି ରଖି ବାହାରିଥିବା ଡୋର ଦୁଇଟିକୁ ଫେରାଇନେଇ ପଟାର ଅନ୍ୟ ପାଖରେ ବାନ୍ଧି ଦୁଇଗୋଟି ଗଣ୍ଠି ଦେବ । ଏଥର ଅବଶିଷ୍ଟ ଡୋରକୁ କାଟିଦେବ ।

ଏହିପରି ପ୍ରତ୍ୟେକ ଦୁଇ ଫେରରେ ଗୋଟିଏ ଗୋଟିଏ ବଅ ପ୍ରସ୍ତୁତ କରି ସେଗୁଡ଼ିକ ପଟାରୁ କାଢ଼ିନେବ । ଆବଶ୍ୟକୀୟ ପରିମାଣର ବଅଗୁଡ଼ିଏ ପ୍ରସ୍ତୁତ ହୋଇଗଲେ ତଳେ ଓ ଉପରେ ଦୁଇଖଣ୍ଡି ବଅକାଠିରେ ସେଗୁଡ଼ିକ ଗଞ୍ଜିକରି ବାନ୍ଧିଦେବ । ସରଳ ବୁଣାରେ କୌଣସି ଲୁଗା ବୁଣିବାକୁ ଥିଲେ ଏହିପରି ଦୁଇଗୋଟି ବଅ ପ୍ରସ୍ତୁତ କରି ତାହା ତନ୍ତରେ ଝୁଲାଇ ଦେବ ।

ବର୍ତ୍ତିମାନ ଠାଣୀଟିକୁ ବମ୍‌ରେ ଚଢ଼ାଇ ତହିଁର ଏକପ୍ରାନ୍ତ କାଟିଦେଇ ସୂତାଗୁଡ଼ିକ ସରଳ ବୁଣା ପ୍ରଣାଳୀରେ ବୁଣିବାକୁ ହେଲେ ପ୍ରଥମ ସୂତାକୁ ପ୍ରଥମ ପାଟି ବଅର ଏବଂ ଦ୍ୱିତୀୟ ସୂତାକୁ ଦ୍ୱିତୀୟ-ପାଟି ବଅର ପ୍ରତି ବଅ ଫେସ୍ତରେ ଅଙ୍ଗୁଳିଦ୍ୱାରା ନିର୍ମିତ ଛିଦ୍ର ମଧରେ ପୁରାଇ କାଢ଼ିନେବାକୁ ପଡ଼ିବ । ଟୁଇଲ୍ ବୁଣିବାର ହେଲେ ଗ୍ଭରିପାଟି ବଅ ପ୍ରସ୍ତୁତ କରି ତାହା ତନ୍ତରେ ଝୁଲାଇ ସେହିପରି ପ୍ରଥମ ସୂତାକୁ ପ୍ରଥମ ପାଟିର, ଦ୍ୱିତୀୟ ସୂତାକୁ ଦ୍ୱିତୀୟ ପାଟିର, ତୃତୀୟ ସୂତାକୁ ତୃତୀୟ ପାଟିର ଓ ଚତୁର୍ଥ ସୂତାକୁ ଚତୁର୍ଥ ପାଟି ବଅର ପ୍ରତି ବଅ ଫେସ୍ତର ମଝିରେ ଥିବା ଛିଦ୍ରଭିତର ଦେଇ କାଢ଼ିନେବାକୁ ପଡ଼ିବ ।



୫ ନମ୍ବର ନାଚ

ଏହାପରେ ସେହି ଠାଣୀସୂତାଗୁଡ଼ିକ ଗୋଟିଏ ପାନଅରେ ପ୍ରତିଗରେ ଦୁଇଟି ଲେଖାଏଁ ଶିଅ ଗୁଞ୍ଜିଦେବ । ଶେଷକୁ ଖଣ୍ଡିଏ ଲୁହାଛଡ଼ ତନ୍ତର ଅନ୍ୟ ବମ୍‌ରେ ବାନ୍ଧି ସେହି ଛଡ଼ରେ ଠାଣୀ-ସୂତାର ମୁଣ୍ଡଗୁଡ଼ିକ ୫।୬ କେଶ କରି ଧରି ତହିଁରେ ଗଣ୍ଠି ପକାଇ ସମାନ ଟେଣ ବାନ୍ଧିଦେବ ।

ପୂର୍ବେ ଟେଷ୍ଟ ବୁଣିବାରେ ଯେପରି ପ୍ରଣାଳୀ ଦେଖାଇ ଦିଆଯାଇଅଛି ଏବଂ ଯେଉଁ ପ୍ରଣାଳୀରେ ସାଧାରଣ ଲୁଗା ବୁଣାଯାଇଥାଏ ଏହାକୁ ଠିକ୍ ସେହିପରି ବୁଣିବ ।

କମ୍ବଳ ନିମନ୍ତେ ଉଲ୍ (ସାଧାରଣ ମେଣ୍ଢାଲୋମର) ସୂତା କାଟିବା ଓ ତାହା ବୁଣିବା ଯେପରି ସହଜ, ତାହା ଯେ କୌଣସି ଗୃହସ୍ଥ ଆପଣା ଘରେ ଆପେ ସୂତାକାଟି ଆପେ କମ୍ବଳ ବୁଣି ପାରିବେ । ଯାହାଙ୍କ ଘରେ ମେଣ୍ଢା ଅଛନ୍ତି, ସେ ନିଜର ମେଣ୍ଢାଙ୍କ ଲୋମଗୁଡ଼ିକ ଉପଯୁକ୍ତ ସମୟରେ କାଟି ତାହା ଫୁରସତବେଳେ ଧୋଇ ଓ ସୂତା କାଟି ନିଜ ଘରେ କମ୍ବଳ ବୁଣି ପାରିବେ । ମାତ୍ର ତନ୍ତ ଗୋଟାଏ ଘରେ ପକାଇବା ସମସ୍ତଙ୍କ ପକ୍ଷରେ ସମ୍ଭବପର ନୁହେଁ । ଏହି ଅସୁବିଧାପାଇଁ ବଡ଼ା

ତନ୍ତରେ କମ୍ବଳ ବୁଣିବାର ଆଉ ଗୋଟିଏ ସହଜ ପ୍ରଣାଳୀ ଅଛି, ତାହା ଯେ କୌଣସି ବ୍ୟକ୍ତିଙ୍କ ପକ୍ଷରେ ବ୍ୟବହାର କରିବା ସମ୍ଭବପର ହେବ । ତହିଁରେ ନିମ୍ନଲିଖିତ ଛୋଟ ଛୋଟ କାଠ ଓ ବାଉଁଶର କେତେଗୁଡ଼ିଏ ସରଞ୍ଜାମ ବା ଯନ୍ତ୍ର ଲୋଡ଼ା ।

୧ । ଖଣ୍ଡିଏ ଛୋଟ ନରିଜ । ଏହାକୁ କମ୍ବଳବୁଣାଳୀମାନେ କହନ୍ତି 'ଓଖର' । ଏହାକୁ ୨ ଫୁଟରୁ ୨½ ଫୁଟ ପର୍ଯ୍ୟନ୍ତ ଲମ୍ବା କରାଯାଇ ପାରେ । ୬ ନମ୍ବର ଚିତ୍ରର ୨ୟ ଚିତ୍ର ପରି ଏହା ୨½ ଫୁଟ ଲମ୍ବା ଖଣ୍ଡିଏ କାଠ । ଏହାର ଗୋଟିଏ ମୁଣ୍ଡରୁ ୨ ଇଞ୍ଚ ବା ୨½ ଇଞ୍ଚ ଛାଡ଼ି ୩ ଇଞ୍ଚ ଅଂଶ ପ୍ରାୟ ୧୦ ଇଞ୍ଚ ମୋଟ । ଅର୍ଥାତ୍ ଏହି ଅଂଶର ପ୍ରତିପାଖ ପ୍ରାୟ ୨½ ଇଞ୍ଚ ଚଉଡ଼ା ଅଟେ । ଏହି ଅଂଶର ଦୁଇ ପାଖରେ ଦୁଇଗୋଟି ଫୋଡ଼ କରାଯାଇ ତାହା ଏପାଖ ସେପାଖ ଫୁଟାଇ ଦିଆଯାଇ ଅଛି । ମୂଳରେ ଯେଉଁ ୨ ଇଞ୍ଚ ବା ୨½ ଇଞ୍ଚ ଛଡ଼ାଗଲା, ତହିଁରେ ଗୋଟିଏ ଘାଇ ଅଛି । ଏହି ୩ ଇଞ୍ଚ ବାଦ୍ ୧ ଫୁଟ ୧୦ ଇଞ୍ଚ ଅଂଶ ଚଉଅଁସିଆ ହୋଇ ପ୍ରତିପାଖ ପ୍ରାୟ ୧½ ଇଞ୍ଚ ଲେଖାଏଁ ରଖାଯାଇଅଛି । ଅର୍ଥାତ୍ ଏହାର ଚାରିପାଖ ମୋଟରେ ୬ ଇଞ୍ଚ ହେବ । ଏହି ଅଂଶରେ ୩ ଗୋଟି ଫୋଡ଼ ରଖାଯାଇଅଛି । ସେହି ଫୋଡ଼ ୩ ଗୋଟିରେ ଖଣ୍ଡିଏ ଖଣ୍ଡିଏ ଡୋର ଲଗାଇ ଏହି ଅଂଶ ସମାନରେ ଖଣ୍ଡିଏ ଲୁହାର ବା ବାଉଁଶର ସରୁ ଛଡ଼ ବାନ୍ଧିବାକୁ ହୁଏ । ସେହି ଛଡ଼ରେ ଟାଣୀସୂତା ଲଗାଯାଏ । ଏହାପରେ ବାକୀ ପ୍ରାୟ ୩ ଇଞ୍ଚ ଅଂଶକୁ ଏହି ଅଂଶଠାରୁ ଅଧିକ ସରୁ କରି ଗୋଲ କରାଯାଇଅଛି । ତାହା ପ୍ରାୟ ୪ ଇଞ୍ଚ ପର୍ଯ୍ୟନ୍ତ ମୋଟା ହେବ । ଏହି ନରିଜ ଖଣ୍ଡିକ ଚାରିକୋଣିଆ କାଠରେ କରାଯାଇ ପାରେ ଓ ଗୋଲ କାଠରେ ମଧ୍ୟ କରାଯାଇ ପାରେ । ୨ୟ ଚିତ୍ରରେ ଗୋଟିଏ ଚାରିକୋଣିଆ କାଠରେ ଓ ୧ମ ଚିତ୍ରରେ ଆଉ ଖଣ୍ଡିଏ ଗୋଲ କାଠରେ ଏରୂପ ଦୁଇଗୋଟି ନରିଜ ଦେଖାଇ ଦିଆ ଯାଇଅଛି । ନରିଜର ମୂଳରେ ଯେଉଁ ୨ ଇଞ୍ଚ ବା ୨½ ଇଞ୍ଚ ମଧ୍ୟରେ ବଡ଼ ଘାଇ କରାଯାଇଅଛି, ସେହି ଘାଇରେ ବୁଣିବାବେଳେ ଗୋଟିଏ ଲମ୍ବା କଣ ଦଉଡ଼ି ଲାଗିବ ।

୨ । ଗୋଟିଏ ଛୋଟ ବମ୍ । ଏହା ଖଣ୍ଡିଏ କାଠର ରୁଲ୍ ପରି । ଏହାର ଦୈର୍ଘ୍ୟଯାକ କରତଦ୍ୱାରା ସମାନ ଅନ୍ତରରେ ବୁଡ଼ିଏ ଗାର କଟାଯାଇଥାଏ ଓ ଦୁଇ ମୁଣ୍ଡରେ ଦୁଇଟି ଘାଇ କରାଯାଇଥାଏ । ୬ ନମ୍ବର ଚିତ୍ରର ଶେଷ ଚିତ୍ର ଦେଖ ।

୩ । ଗୋଟିଏ ପିଠଣା । ଏହା ୬ ନମ୍ବର ଚିତ୍ରର ୭ମ ଚିତ୍ରପରି ଖଣ୍ଡିଏ ପଟାରେ କାଠ ଖଣ୍ଡାପରି କରାଯାଇଅଛି । ଏହାର ପିଠି ଅପେକ୍ଷା ଦାନ୍ତ ଟିକିଏ ପତଳା ।

୪ । ଗୋଟିଏ ନଳା । ଏହା ଖଣ୍ଡିଏ ମୋଟ ଓ ସିଧା ବାଉଁଶର ନଳା । ବୁଣିବାବେଳେ ଫାନ୍ଦ ଉଠାଇବା ପାଇଁ ଏହା ବ୍ୟବହାର କରାଯାଏ । ୬ ନମ୍ବର ଚିତ୍ରର ୬ଷ୍ଠ ଚିତ୍ର ଦେଖ ।

୫ । ୬ ନମ୍ବର ଚିତ୍ରର ୫ମ ଚିତ୍ର ପରି ୧ ଇଞ୍ଚ ମୋଟର ଖଣ୍ଡିଏ ପଟା । ଏହାର ଦୁଇ ମୁଣ୍ଡରେ ଦୁଇଗୋଟି ଫୋଡ଼ ଥାଏ । ସେହି ଫୋଡ଼ରେ ୨ ଖଣ୍ଡି ଡୋର ଲଗିଥାଏ । ସେହି ଡୋର ଦୁଇଟିରେ ବମ୍ ଖଣ୍ଡିକ ବନ୍ଧାଯାଏ । ଏହାର ଠିକ ମଝିରେ ଧାର କରାଯାଇଥାଏ । ଏହି ଧାର କଲାବେଳେ ଅତି ସାବଧାନ ହୋଇ ଏପରି ମାପ କରି କରିବାକୁ ହୁଏ, ଯେପରି କି ଏହି ଧାରରେ କଣ ଦଉଡ଼ିଟି ଲଗାଇ ଟାଣି ଧରିଲେ ଟାଣୀ ଗୋଟିକଯାକ ସମାନ ହୋଇ ରହି ପାରିବ ।



୬ ନମ୍ବର ଚିତ୍ର

୬ । ଗୋଟିଏ କଣ୍ଡାକାଠି । ଏହାର ଆକାର ୬ ନମ୍ବର ଚିତ୍ରର ୪ର୍ଥ ଚିତ୍ରପରି । ଏହାର ଦୁଇମୁଣ୍ଡ ଗୋଜିଆ ।

୭ । କଣ୍ଠାସି—ଏହା ୬ ନମ୍ବର ଚିତ୍ରର ୩ୟ ଚିତ୍ରପରି ଖଣ୍ଡିଏ କାଠି । କମ୍ବଳ ପଟିକୁ ଯେତେ ଚଉଡ଼ା କରିବ ଏହି କଣ୍ଠାସିକୁ ସେହି ମାପରେ କରି ତାହାର ଦୁଇ ମୁଣ୍ଡ ମୁନିଆଁ କରି ରଖିବ ।

୮ । ଏହାଛଡ଼ା ଆଉ ଦୁଇଗୋଟି ବଟା, ଗୋଟିଏ ଡାମ୍ପଣ ଓ ୧୦।୧୨ ହାତ ଲମ୍ବା ଗୋଟିଏ ଶକ୍ତ କଣ ଦଉଡ଼ି ଦରକାର ।

ଏହି ସରଞ୍ଜାମଗୁଡ଼ିକ ଦ୍ୱାରା ସରଳ ବୁଣା ପ୍ରଣାଳୀରେ କମ୍ବଳ ପାଇଁ ଗୋଟିଏ ଗୋଟିଏ ପଟି ବୁଣାଯାଇ ପାରିବ । ଏଥିରେ ଟୁଇଲ୍ ବୁଣା ହୋଇ ପାରିବ ନାହିଁ ।

ଲୁଗା ବା ଫିତା ବା ଝୋଟର ପଟି ଓ ଦରି ବୁଣିବା ପାଇଁ ଟାଣୀ ତିଆରି କରିବାର ଯେଉଁ ପ୍ରଣାଳୀ ପୂର୍ବେ ଦେଖାଇ ଦିଆଯାଇଅଛି, ଠିକ ସେହି

ପ୍ରଣାଳୀରେ ମେଣ୍ଢାଲୋମର ସୂତାରେ କମ୍ବଳ ପାଇଁ ଝାଣୀ ପ୍ରସ୍ତୁତ କରିବ । ନଗ୍ରିଜ ମାପରେ ଯେତେ ଚଉଡ଼ା ଲାଗିବ, ଝାଣୀକୁ ସେତେ ଚଉଡ଼ା କରିବ । କମ୍ବଳକୁ ଯେତେ ଲମ୍ବା କରିବାକୁ ଇଚ୍ଛା କରିବ ଝାଣୀକୁ ତାହାଠାରୁ ୧୦।୧୨ ଇଞ୍ଚ ଅଧିକ ଲମ୍ବା କରିବ । ସୂତା ସରୁ ହେଲେ ପ୍ରତି ଇଞ୍ଚରେ ଝାଣୀ ସୂତାର ୧୬ ଗୋଟି ପର୍ଯ୍ୟନ୍ତ ଖିଅ ରଖିବ । ସୂତା ମୋଟ ଥିଲେ ପ୍ରତି ଇଞ୍ଚରେ ୧୨ ଗୋଟି ପର୍ଯ୍ୟନ୍ତ ଖିଅ ରଖିବ । ଝାଣୀ ପ୍ରସ୍ତୁତ କରି ସାରି ତହିଁର ଦୁଇଟି ଫାନ୍ଦରେ ଦୁଇଖଣ୍ଡି ସୂତା ବାନ୍ଧି ତାହାକୁ ଉଠାଇ ନେବ । ତାପରେ ଝାଣୀକୁ ମଣ୍ଡରେ ବୁଡ଼ାଇ ଶୁଖାଇ ଦେବ । ଶୁଖିବା ସମୟରେ ସୂତାଗୁଡ଼ିକ ହାତରେ ଧରି ଗୋଟି ଗୋଟି କରି ଛଡ଼ାଇ ଦେଉଥିବ । ଶୁଖିଗଲେ ନଗ୍ରିଜରେ ଓ ବିମ୍‌ରେ ଚଢ଼ାଇ ବୁଣିବାକୁ ହେବ ।

ଗୋଟିଏ ସମତଳ ସ୍ଥାନରେ ୭ ନମ୍ବର ଚିତ୍ରପରି ଏକ ମୁଣ୍ଡରେ ଦୁଇଗୋଟି ଖୁଣ୍ଟି ପୋତିବ । ତହିଁ ମଧ୍ୟରୁ ଗୋଟିଏ ଖୁଣ୍ଟି ଖଣ୍ଡିଏ ଲୁହାର ଗଜ ହେଲେ ସୁବିଧା ହେବ । ଲୁହା



୭ ନମ୍ବର ଚିତ୍ର

ଗଜ ନ ମିଳିଲେ ଖଣ୍ଡିଏ ସରୁ ବାଉଁଶର ବା ଶକ୍ତ କାଠର ଲମ୍ବ କାଠି କରି ପାରିବ । ନଗ୍ରିଜର ଏକ ପ୍ରାନ୍ତରେ ଥିବା ଗୋଟିଏ ଫୋଡ଼ରେ ଏହି ଖୁଣ୍ଟିର ଅଗକୁ ପୁରାଇ ଦେବ । ତାହାହେଲେ ନଗ୍ରିଜଟି ଅଟକି ରହିବ । ନଗ୍ରିଜର ଅନ୍ୟ ମୁଣ୍ଡ ଅଟକାଇବା ପାଇଁ ଆଉ ଦୁଇ ଖଣ୍ଡି ଖୁଣ୍ଟି ଏକାଠି ଲଗାଇ ଅନ୍ୟ ମୁଣ୍ଡରେ ପୋତିବ । ସେ ଦୁଇଖଣ୍ଡି କାଠି ଏକାଠି ପୋଡ଼ିକରି ଏପରି ଭାବରେ ପୋତିବ, ଯେପରି ନଗ୍ରିଜର ଅଗ ଗୋଟିଏ ଖୁଣ୍ଟି ଉପରେ ରହିବ ଏବଂ ଅନ୍ୟ ଖୁଣ୍ଟିଟି ନଗ୍ରିଜକୁ ଅଟକାଇ ରଖିବ ।

ନଗ୍ରିଜରେ ବନ୍ଧା ହେବାପାଇଁ ଯେଉଁ ଲୁହାର ସରୁଛଡ଼ ଖଣ୍ଡିଏ ବା ବାଉଁଶର ଛଡ଼ ଖଣ୍ଡିକ ବିଷୟ ପୂର୍ବେ କୁହାଯାଇଅଛି, ସେହି ଛଡ଼ ଖଣ୍ଡିକ ଝାଣୀର ଏକ ମୁଣ୍ଡର ଭାଙ୍ଗ ମଧ୍ୟରେ ପୁରାଇ ତାହାକୁ ନଗ୍ରିଜ ଦେହରେ ଥିବା ୩ ଗୋଟି ଫୋଡ଼ର ଡୋରଦ୍ୱାରା ବାନ୍ଧିଦେବ ଏବଂ ଝାଣୀର ଅପର ମୁଣ୍ଡର ଭାଙ୍ଗ ମଧ୍ୟରେ ବିମ୍‌କୁ ପୁରାଇ ତହିଁର ଦୁଇ ମୁଣ୍ଡରେ ଥିବା ଦୁଇଟି ଘାଇରେ ୭ ନମ୍ବର ଚିତ୍ରର ୫ମ ଚିହ୍ନ ପରି ପଟା ଖଣ୍ଡିକରେ ଲାଗିଥିବା ଦୁଇଖଣ୍ଡି ଡୋରକୁ ବାନ୍ଧିଦେବ । ଏହି ପଟାଖଣ୍ଡି [illegible]

ମଝି ଘାଇରେ ଉପରବର୍ଣ୍ଣିତ ଲମ୍ବା କଶ ଦଉଡ଼ି ଖଣ୍ଡିକ ବାନ୍ଧିଦେବ । ଟାଣୀକୁ ଅଣ୍ଟ କରି ଟାଣିଲେ ଏହି ପଟାଖଣ୍ଡିକ ଯେଉଁ ପର୍ଯ୍ୟନ୍ତ ଯିବ, ତାହାଠାରୁ ଦେଢ଼ଫୁଟ ଜାଗା ଛାଡ଼ି ଗୋଟିଏ ଖୁଣ୍ଟି ପୋତିବ । କଶ ଦଉଡ଼ିକୁ ନେଇ ସେହି ଖୁଣ୍ଟିରେ ଥରେ ଗୁଡାଇ ସେହି ଦଉଡ଼ିକୁ ଟାଣୀର ତଳେ ତଳେ ନେଇ ଅନ୍ୟ ପ୍ରାନ୍ତରେ ଆଉ ଗୋଟିଏ ଖୁଣ୍ଟିରେ ବାନ୍ଧି ଅଟକାଇ ରଖିବ ଅଥବା ନରାଜର ଏକ ମୁଣ୍ଡରେ ଥିବା ଘାଇରେ ବାନ୍ଧି ଅଟକାଇ ଦେବ । ଏ କଥାକୁ ସ୍ମରଣ ରଖିଥିବ ଯେ, ନରାଜର ଏହି ମୁଣ୍ଡ ବା ଖୁଣ୍ଟି ବୁଣିବା ଲୋକର ଡାହାଣ ହାତ ପାଖକୁ ରହିବ ।

ଏଥର ନରାଜରେ ଓ ବମ୍‌ରେ ଲଗାଯାଇଥିବା ଟାଣୀ ସୂତାକୁ ବମ୍‌ର ଘାଇ ଉପରେ ସଜାଡ଼ି ସମାନ ସମାନ ଦୂରଛଡ଼ା କରି ରଖିବ ଏବଂ ତହିଁରେ ରଖିଥିବା ଦୁଇଗୋଟି ଫାନ୍ଦରେ ଦୁଇଖଣ୍ଡି ବତା ଦେଇ ଫାନ୍ଦ ଉଠାଇଦେବ । ପ୍ରଥମ ଫାନ୍ଦରେ ପୂର୍ବବର୍ଣ୍ଣିତ ବଅ ବାନ୍ଧିବା ପ୍ରଣାଳୀରେ ଗୋଟିଏ ଧାଡ଼ି ସାଧା ବଅ ବାନ୍ଧିବ । ଦ୍ୱିତୀୟ ଫାନ୍ଦରେ କେବଳ ୭ ନମ୍ବର ଚନ୍ଦ୍ରବର୍ଣ୍ଣିତ ବାଉଁଶ ଖଣ୍ଡିକ ପୁରାଇ ଦେବ । ଏଥର ବତା ଦୁଇଖଣ୍ଡିକୁ କାଢ଼ି ନେଇ ବୁଣିବାକୁ ଆରମ୍ଭ କରିବ ।

ଏପରି ବୁଣିବା ପ୍ରଣାଳୀ ଏଥିପୂର୍ବେ ବର୍ଣ୍ଣିତ ହୋଇଥିବା ଫ୍ରେମ୍‌ରେ ଆସନ ବୁଣିବା ପ୍ରଣାଳୀ ପରି ଅଟେ । ଅର୍ଥାତ୍ ଗୋଟିଏ ବଅ ଉଠାଇ ଥରେ ବୁଣିବ । ତାହାକୁ ପିଟଣାଖଣ୍ଡିକ-ଦ୍ୱାରା ପିଟି ବସାଇଦେବ । ତା ପରେ ପିଟଣାଟି କାଢ଼ିନେଲେ ମୋଟା ବାଉଁଶଖଣ୍ଡିକ ଥିବା ହେତୁ ଅନ୍ୟ ବଅଟି ଆପେ ଉପରକୁ ଉଠିଯିବ । ବର୍ତ୍ତମାନ ଦ୍ୱିତୀୟ ଥରକୁ ବୁଣି ପୁନଶ୍ଚ ପିଟଣାଦ୍ୱାରା ପିଟି ଖିଅଟି ବସାଇଦେବ । ତାପରେ ଗୃପୁଆଣି ବତାଖଣ୍ଡିକ ବଅତାଙ୍ଗି ଓ ମୋଟା ବାଉଁଶଖଣ୍ଡିକର ମଝିରେ ରଖି ଚିପି ଦେଲେ ତୃତୀୟ ଥରକୁ ବଅ ପୁଣି ଉପରକୁ ଉଠିଯିବ । ଏହିପରି କ୍ରମାଗତ ବୁଣିଯିବ । ଦୁଇ ତିନ ଇଞ୍ଚ ବୁଣିବା ପରେ ଡାଙ୍ଗଣଦ୍ୱାରା ସୂତାଗୁଡ଼ିକ ଚଳାଇ ଯେଉଁଠାରେ ଅସମାନ ଥିବ, ସେଠାରେ ସୂତାମାନଙ୍କୁ ସମାନ ଛଡ଼ା ଛଡ଼ା କରି ରଖୁଥିବ ଏବଂ ୬ ନମ୍ବର ଚନ୍ଦ୍ରର କଣ୍ଟାଯିି କାଠିଖଣ୍ଡି ଦୁଇପାଖର କନାରେ ଫୋଡ଼ି ଲଗାଇ ଦେଉଥିବ । ପ୍ରତିଥର ୨।୩ ଇଞ୍ଚ ବୁଣିବା ପରେ ଏହିପରି କରୁଥିଲେ ଚଉଡ଼ା ସମାନ ରହିଥିବ ।

ଏକହାତ ବା ଦେଢ଼ହାତ କମ୍ବା ବୁଣିବା ବ୍ୟକ୍ତିର ହାତ ପାଇବା ପର୍ଯ୍ୟନ୍ତ ବୁଣା ହୋଇଗଲେ ନରାଜର ଘାଇରେ ବନ୍ଧା ହୋଇଥିବା କଶ ଦଉଡ଼ିଖଣ୍ଡିକୁ ଫିଟାଇ ନରାଜଟି ଉଠାଇ ନେବ ଏବଂ ବୁଣା ହୋଇ ଯାଇଥିବା ଅଂଶକୁ ନରାଜରେ ଗୁଡ଼ାଇ ଦେବ । ତା ପରେ ନରାଜଟି ପୂର୍ବେ ଯେପରି ଥିଲା ସେହିପରି ତାହାକୁ ବସାଇ ଦେଇ କଶ ଦଉଡ଼ିକୁ ଭିଡ଼ି ଏପରି ଭାବରେ ବାନ୍ଧିଦେବ, ଯେପରି ଟାଣୀଟି ଉତ୍ତମରୂପେ ଭିଡ଼ ହୋଇ ରହିବ । ପୁଣି ବୁଣିବାରେ ଲାଗିଯିବ । ଏହିପରି ଥରକୁ ଥର ଆବଶ୍ୟକ ମତେ ଦଉଡ଼ି ଫିଟାଇ ଯେତେ ଅଂଶ ବୁଣା ସରୁଥିବ, ତାକୁ ନରାଜରେ ଗୁଡ଼ାଇ ଦେଉଥିବ । ଏହି ଭାବରେ ଶେଷ ପର୍ଯ୍ୟନ୍ତ ବୁଣିଯିବ ।

୩ ଗୋଟି ବା ୪ ଗୋଟି ଏହିପରି ପଟି ବୁଣିବା ପରେ ସେଗୁଡ଼ିକ ପରସ୍ପର ସହିତ ସେହି କମ୍ବଳ ସୂତାଦ୍ୱାରା ସିଲାଇ କରିଦେଲେ ଗୋଟିଏ ବେଶ୍ ଲମ୍ବା ଓ ଚଉଡ଼ା କମ୍ବଳ ତିଆରି ହେବ ।

ଆସନ କରିବାର ହେଲେ ବୁଣିବା ସମୟରେ ଆସନର ପରିମାଣ ଏକହାତ ବା ଦେଢ଼ହାତ ଚୌଡ଼ାର ଗୋଟିଏ ପଟି ଆରମ୍ଭ କରି ତାହା ଏକହାତ ବା ଦେଢ଼ହାତ ପର୍ଯ୍ୟନ୍ତ ବୁଣା ହୋଇଗଲେ ଖଣ୍ଡିଏ ଆସନ ହୋଇଯିବ । ସେହିଠାରେ ବୁଣା ବନ୍ଦ କରି ୩।୪ ଇଞ୍ଚ ଛାଡ଼ି ଦେଇ ଆଉ ଖଣ୍ଡିଏ ବୁଣିବ । ଏହିପରି ସେହି ଟାଣିରେ ଯେତେଖଣ୍ଡ ଆସନ ହୋଇ ପାରିବ ତାହା ବୁଣି ଶେଷ କରିବ । ଆସନରେ ଧଡ଼ି ନିମନ୍ତେ ଅନ୍ୟ ରଙ୍ଗର ଜିଲ୍ ସୂତା ପ୍ରଥମରୁ ଟାଣୀରେ ଦେଇଥିବ । ଏବଂ ବୁଣିବା ସମୟରେ ଆସନର ଦୁଇ ମୁହଁରେ ମଧ୍ୟ ସେହି ଅନ୍ୟ ରଙ୍ଗର ଜିଲ୍ ସୂତା ବୁଣି ଆସନର ମୁହଁଶ୍ରୀ ପ୍ରସ୍ତୁତ କରୁଥିବ । ବଡ଼ କମ୍ବଳ କରିବାପାଇଁ ପଟି ବୁଣିବାବେଳେ ଗୋଟିଏ ପଟିରେ ବାଆଁ ପାଖରେ ଯେବେ ଅନ୍ୟ ରଙ୍ଗର ଗୋଟି କେତେ ସୂତା ଟାଣୀରେ ଖଞ୍ଜିବ ତେବେ ଆଉ ଗୋଟିଏ ପଟିରେ ଡାହାଣ ପାଖରେ ସେହି ରଙ୍ଗର ସୂତା ଟାଣୀରେ ଖଞ୍ଜିବ ଏବଂ ପ୍ରତି ପଟିରେ ବୁଣା ଆରମ୍ଭ ପରେ ଓ ଶେଷ ହେବା ପୂର୍ବେ ଯେବେ ସେହି ରଙ୍ଗର କେତେ ଧାଡି ସୂତା ଭରଣୀରେ ବୁଣିବ, ତେବେ କମ୍ବଳର ମୁହଁଶ୍ରୀ ଓ ଧଡ଼ି ହୋଇଯିବ ।

**ମିଲିଙ୍ଗ୍ (Milling) :—**

ତନ୍ତଦ୍ୱାରା ହେଉ ବା ଅନ୍ୟ କୌଣସି ପ୍ରଣାଳୀରେ ହେଉ କମ୍ବଳ ବୁଣା ସରିଲେ ତାହା ଦେଖିବାକୁ ଝଲରା ଓ ଅସୁନ୍ଦର ଦେଖାଯାଏ । କମ୍ବଳ ବୁଣା ସରିଲେ ତାକୁ ପାଣିରେ ଓଦା କରି ଗୋଟିଏ ପକ୍କା ଚଟାଣ ଉପରେ ବା ସମତୁଲ ପଥର ଚକଡ଼ା ଉପରେ କିମ୍ବା ଖଣ୍ଡିଏ ପଟା ଉପରେ ଅଥବା କେବଳ ଖଣ୍ଡିଏ ଚଟେଇ ଉପରେ ରଖି ଦୁଇ ଗୋଡ଼ଦ୍ୱାରା ଧାନ ମଳିଲା ପରି ଖୁବ୍ ଦଳିବ । ଯେତେ ଦଳିବ ପଦାର୍ଥଟି ସେତେ ବହଳ, ଚିକ୍କଣ ଓ ଆଖିରୁଚିକର ହେବ । ପ୍ରାୟ ୧ ଘଣ୍ଟାରୁ ୨ ଘଣ୍ଟା ପର୍ଯ୍ୟନ୍ତ ଏହିପରି ଦଳିବାକୁ ପଡ଼ିବ । ଆବଶ୍ୟକମତେ ଦଳିଲାବେଳେ ସେଥିରେ କିଛି କିଛି ପାଣି ଛିଞ୍ଚୁଥିବ । ଦଳୁଁ ଦଳୁଁ ଯେତେବେଳେ ତାହା ଚିକ୍କଣ ହୋଇଯିବ ତା ଉପରୁ ଦଳିବା ବ୍ୟକ୍ତିର ଗୋଡ଼ ଖସିଯିବ ସେତେବେଳେ ଜାଣିବ ଯେ, ଦଳା ଠିକ୍ ହୋଇଗଲାଣି ।



୮ ନମ୍ବର ଚିତ୍ର

ବୁଣା ହେବା ପଦାର୍ଥଟି ଦଳବାଦ୍ୱାରା ବନ୍ଧନ ହେବାରୁ ତାହାର ଲମ୍ବା ଓ ଚଉଡ଼ା କେତେକ ପରିମାଣରେ କମିଯାଏ; ତେଣୁ କମ୍ବଳ ବୁଣିବାପାଇଁ ଟାଣୀକୁ ବେଶୀ ଲମ୍ବା ଓ ଚଉଡ଼ା କରିବାକୁ ହୁଏ । ଏହି ଦଳବା ପ୍ରଣାଳୀକୁ ମିଲିଙ୍ଗ୍ କହନ୍ତି ।

ଏକଥା ସତ ଯେ, ଆମ ଦେଶର ମେଣ୍ଢାଙ୍କ ଲୋମଗୁଡ଼ିକ ଛୋଟ ଛୋଟ ଏବଂ ତାହା କୋମଳ ନୁହେଁ । ଏହା ନିରସା ପଶମ । କମ୍ବଳ ଓ ଗାଲିଚା ଛଡ଼ା ଅନ୍ୟ କୌଣସି ଉଚ୍ଚ ଶ୍ରେଣୀର ଗରମ ଲୁଗା ଏଥିରେ ବୁଣା ହୋଇ ପାରିବ ନାହିଁ । କିନ୍ତୁ ଆମ ଦେଶର ମେଣ୍ଢାଙ୍କ ଲୋମ ଯେବେ ବରାବର କଟାଯାଏ ତେବେ ଭବିଷ୍ୟତକୁ ଏହି ଲୋମ ଆଉ କିଛି ଅଧିକ ଲମ୍ବା, ସଫା ଓ ନରମ ହେବ, ଏଥିରେ ସନ୍ଦେହ ନାହିଁ । ଯେବେ ଅନ୍ୟ କୌଣସି ଦେଶରୁ ଅଧିକ ପଶମବାଲା ମେଣ୍ଢା ଅଣାଯାଇ ଆମ ଦେଶର ମେଣ୍ଢାଙ୍କ ସଙ୍ଗେ ଯୋଡ଼ ଲଗାଇ ଦୋମିଶା ମେଣ୍ଢା ହେବାର ଉପାୟ କରାଯାଏ, ତେବେ ଏ ଦୋନୋସଲା ମେଣ୍ଢାଙ୍କ ଲୋମ ନିଶ୍ଚୟ ସରସ ହେବ । ପଶୁ ଜାତିର ଏ ପ୍ରଣାଳୀରେ ଉନ୍ନତି କରିବା ପ୍ରଣାଳୀକୁ କ୍ରସ୍-ବ୍ରିଡ଼ିଙ୍ଗ୍ ବୋଲାଯାଏ ଓ ଏ ଦୋନୋସଲା ପଶୁଙ୍କୁ କ୍ରସ୍‌ବ୍ରେଡ୍ (Crossbreed) ବୋଲାଯାଏ । ଆଲମୋରାଅଞ୍ଚଳର ମେଣ୍ଢାଙ୍କୁ ଆଣି ଆମ ଦେଶର ମେଣ୍ଢାଙ୍କ ସହିତ କ୍ରସ୍‌ବ୍ରିଡ଼ିଙ୍ଗ୍ ହେଲେ ଆମ ଦେଶରେ ଅତି ଉତ୍ତମ ପଶମ ହେବାର ଆଶା କରାଯାଏ । ମାତ୍ର ଆଲମୋରା ବିଶେଷ ଥଣ୍ଡା ଜାଗା । ଆଲମୋରାର ମେଣ୍ଢାଙ୍କ ପକ୍ଷରେ ଆମ ଦେଶ କେତେଦୂର ସ୍ୱାସ୍ଥ୍ୟକର ହେବ, ତାହା କହି ହେଉ ନାହିଁ । ଗୋଆଲିଅର ବା ବିକାନିର୍ ରାଜ୍ୟର ମେଣ୍ଢା ଏଠାରେ ସହଜରେ ଚଳି ପାରିବେ । ତେଣୁ ସେହିଠାରୁ ଗୁଡ଼ିଏ ମେଣ୍ଢା ଅଣାଇ ଏଠାରେ କ୍ରସ୍‌ବ୍ରିଡ଼ିଙ୍ଗ୍‌ର ପରୀକ୍ଷା କରାଗଲେ ଅବଶ୍ୟ ଅନେକ ପରିମାଣରେ ଆମ ଦେଶରେ ମେଣ୍ଢାଙ୍କ ଲୋମ ବର୍ତ୍ତମାନ ଅପେକ୍ଷା ସରସ ହେବ ଏଥିରେ ସନ୍ଦେହ ନାହିଁ ।

ବିକାନିର ରାଜ୍ୟର ଗୋଟିଏ ମେଣ୍ଢାଠାରୁ ବର୍ଷରେ ୧୬୦ ତୋଳାରୁ ୧୮୦ ତୋଳା ପର୍ଯ୍ୟନ୍ତ ଲୋମ ମିଳେ । ବିକାନିରର ମାଈ ମେଣ୍ଢା ୨ବର୍ଷ ବୟସ ହେବାପରେ ପ୍ରଥମେ ଗର୍ଭ ହୁଅନ୍ତି । ପ୍ରଥମ ଗର୍ଭ ପରେ ପ୍ରତି ୧୬ ମାସରୁ ୧୮ ମାସ ମଧ୍ୟରେ ଏ ମେଣ୍ଢା ୨ ଥର ଛୁଆ ଦିଅନ୍ତି । ଏ ମେଣ୍ଢା ପ୍ରାୟ ୧୨ ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି ।

୫୦ ଗୋଟି ମାଈ ମେଣ୍ଢାଙ୍କ ନିମନ୍ତେ ଗୋଟିଏ ଅଣ୍ଡିରା ମେଣ୍ଢା ବା ଗାରଡ଼ା ରଖିଲେ କାମ ଚଳିବ । ମାତ୍ର ସୁବିଧା ଅସୁବିଧା ଓ ବେଆରାମ ଆରାମ ବିବେଚନାରେ ୫୦ଟି ମାଈମେଣ୍ଢାଙ୍କ ନିମନ୍ତେ ୨ଗୋଟି ଗାରଡ଼ା ରଖିବା ଉଚିତ । ମେଣ୍ଢାଙ୍କର ପ୍ରଧାନ ଖାଦ୍ୟ କାଣ୍ଡିଆ ଲୁଣ୍ଡା । ଗୋଟିଏ ଦେଶୀ ମେଣ୍ଢାକୁ ପ୍ରତିଦିନ ଏକପାଆ କାଣ୍ଡିଆଲୁଣ୍ଡା, ଏକ ଛଟାଙ୍କି ଚୋକଡ଼ ଏବଂ କିଛି ଲୁଣ ଦେଲେ ଯଥେଷ୍ଟ

ଗଲେ ସେହି ସାବନମିଶା ପାଣି କେବଳ ଉଷୁମ ଥିବା ଅବସ୍ଥାରେ ତହିଁରେ ପଶମ ଲୁଗାକୁ ବୁଡ଼ାଇକରି ସଫାକରିବ । ସାବନରେ ଧୋଇ ତା ପରେ ବାରମ୍ବାର ନିର୍ମଳ ଜଳଦ୍ୱାରା ତାହାକୁ ଧୋଇ ସେ ଲୁଗାରୁ ସାବନ ଅଂଶ ସମ୍ପୂର୍ଣ୍ଣରୂପେ ବାହାର କରି ଦେବାକୁହେବ । ସାବନର କୌଣସି ଅଂଶ ଲୁଗାରେ ରହିଲେ ଯେବେ ଇସ୍ତ୍ରି କରିବ ତେବେ ଲୁଗାରେ ହଳଦିଆଦାଗ ପଡ଼ିଯିବ । ସେ ଦାଗ ଛଡ଼ାଇବା ବଡ କଠିନ ।

ଏହିପରି ଦାଗ ପଡ଼ିଗଲେ ତାହାକୁ ଛଡାଇବାର ଉପାୟ କେବଳ ବାରମ୍ବାର ଧୋଇ ଖରାରେ ଶୁଖାଇବା ଛଡା ଅନ୍ୟ କିଛି ନାହିଁ । ଏହିପରି ଶୁଖାଇଲେ ଅଳ୍ପେ ଅଳ୍ପେ ଦାଗ ଛାଡ଼ିଯିବ । ଘାସ ଉପରେ ସେ ଲୁଗାକୁ ପାରିଦେଇ ଶୁଖାଇ ପାରିଲେ ଶୀଘ୍ର ଦାଗ ଛାଡ଼ିପାରିବ, ପଶମ ଲୁଗାକୁ ଧୋଇବାକୁ କଦାଚ ବ୍ଲିଚିଙ୍ଗ ପାଉଡର ବ୍ୟବହାର କରିବନାହିଁ । ବ୍ଲିଚିଙ୍ଗ ପାଉଡର ମିଶାପାଣିରେ ଲୁଗାକୁ ଅଧିକ ସମୟ ବୁଡାଇ ରଖିଲେ ପଶମଲୁଗା ଏକାବେଳକେ ମିଳାଇ ଯାଇପାରେ ।

କମ୍ବଳ ଓ ଫ୍ଲାନେଲ କାରଖାନାମାନଙ୍କରେ ପଶମ ଲୁଗାକୁ ଗନ୍ଧକବାଷ୍ପଦ୍ୱାରା ସଫା କରନ୍ତି ।

ପଶମ ଲୁଗାକୁ ଅଧିକ ଉତ୍ତାପରେ ସିଝାଇଲେ ଲୁଗାର ବଳ କ୍ଷୟ ହୁଏ ଏବଂ ଲୁଗା ନଷ୍ଟ ହୋଇଯାଇପାରେ ।

ପଶମ ଲୁଗାକୁ ଶୁଖିଲା ଓ ଥଣ୍ଡା ସ୍ଥାନରେ ରଖିବ । ପଶମ ଲୁଗାରେ ଶୀଘ୍ର ପୋକ ଲାଗନ୍ତି । ପୋକମାନେ ପଶମ ଲୁଗାରେ ଡିମ୍ବ ପାରନ୍ତି, ପଶମ ଲୁଗା ବ୍ୟବହାର ହେଉଥିଲେ ପୋକ ଲାଗିବାର ଭୟ ନ ଥାଏ । ପଶମ ଲୁଗାରେ ନିମ୍ବପତ୍ର ଦେଇ ରଖିଲେ ସହଜରେ ପୋକ ଲାଗନ୍ତି ନାହିଁ ।

ପଶମ ଲୁଗା ଧୋଇବା ଦୋଷରେ ଅଧିକାଂଶ ସମୟରେ ଛୋଟ ଛୋଟ ହୋଇଯାଏ ।

ପଶମ ଲୁଗାକୁ ନିଆଁ ଉପରେ ବସାଇ ସିଦ୍ଧ କରିବ ନାହିଁ କିମ୍ବା ବେଶୀ ଗରମ ହୋଇଥିବା ପାଣିରେ ଧୋଇବନାହିଁ । ନିଖ ଉଷୁମ ପାଣିରେ ଧୋଇବ ।

ପଶମଲୁଗା ଖରାରେ ଶୁଖାଇବା ଉଚିତନୁହେଁ । ତାହାକୁ ଖୋଲା ପବନରେ ଖରା ନ ପଡ଼ିବା ଜାଗାରେ ଶୁଖାଇବ ।

ପଶମ ଲୁଗାକୁ ଓଦା କରି ଅଧିକ ସମୟ ରଖିଦେଲେ ତାହା ବିଶେଷ ଛୋଟ ଛୋଟ ହୋଇଯାଏ, ତେଣୁ ତାହା ଉତ୍ତମରୂପେ ବିସ୍ତାରିତ କରି ଶୁଖାଇବ । ଓଦାଥାଉଁ ଥାଉଁ ଟାଣି ଲୁଗାକୁ ବିସ୍ତାର କରିଦେଲେ ଶୁଖିଗଲେ ତାହା ଛୋଟ ଛୋଟ ହୁଏ ନାହିଁ ।